# ର୍ଫ କିଣିବାରେ ହିଁ ଅଛି ଅଧିକ ବିଜ୍ଞତ

"ସତ କହୁଛି, ସର୍ଫ କିଣିବା ଭଳି ବେଶୀ ବୁଦ୍ଧିମାନୀର କାମ ଆଉ କିଛି ନାହିଁ । ଏହାର ପାୱାର ପ୍ୟାକ୍‌ଡ ଫର୍ମୁଲା ଅପ ପଇସାର ସର୍ବୋତ୍କୃଷ୍ଟ ମୂଲ୍ୟ ଅସୁଲ କରିଦିଏ ।"

**ସର୍ବୋତ୍କୃଷ୍ଟ ମୂଲ୍ୟ ? ପ୍ରଥମରୁ ହିଁତ ସର୍ଫ'ର ଦାମ**

"ଆଚ୍ଛା ବାବୁ, ପ୍ରଥମେ ଏହାର ଲାଭକୁ ତ ଦେଖନ୍ତୁ । ଏକମାତ୍ର ସର୍ଫହିଁ ସବୁଠୁ ବେଶୀ ଧଳା କରି ଧୁଏ ଆଉ ଲୁଗାପଟାକୁ ରଖେ ସବୁଠୁ ବେଶୀ ସୁରକ୍ଷିତ । ସେଇଥିପାଇଁ ତ ସବୁବେଳେ ଲୁଗାପଟା ନୂଆ ଭଳି ଦିଶେ ! ଫଳରେ ନାନା ଭାବେ ଆପଣଙ୍କର ବେଶୀ ବେଶୀ ପଇସା ବଞ୍ଚେ । ଏବେ ସର୍ବୋତ୍କୃଷ୍ଟ ମୂଲ୍ୟ ଅସୁଲ କରିବାର ମାନେ ବୁଝିଲେ ତ ?"

**ଠିକ ଅଛି ଲଳିତା ଦେବୀ, କିନ୍ତୁ କ'ଣ ଖାଲି ଏତିକି**

"ନା, ନା, ଆହୁରି ଅଛି । ପ୍ରତ୍ୟେକ ୧/୨ କିଲୋ ସର୍ଫ ପାଉଡର ୧ କିଲୋ ସାଧାରଣ ପାଉଡର ସହିତ ସମାନ । ମାନେ, କିଲେ ସାଧାରଣ ପାଉଡର ଯେତେ ଲୁଗାପଟା ଧୁଏ, ଅଧ କିଲେ ସର୍ଫରେ ସେତିକି ଧୋଇ ହୁଏ । ତାହେଲେ ସର୍ଫରେ ଆହୁରି ଲାଭ ପାଉଛନ୍ତି, ନୁହେଁକି ?"




**ଏହାର ଅର୍ଥ ସର୍ଫ ନକଲ୍ପ ଉପା**
**ଗୋଟି ଗୋଟି କରି ପଇସା ଅସୁଲ କ**

"....ତେଣୁ ଏକାଧିକ ଭାବେ ଆପ
ଭ ହୁଏ । ଶସ୍ତା କାଦେ ବାରମ୍ବାର ....
ଉକ୍ତିଟି ଶୁଣିଥିବେ ନିଶ୍ଚୟ । ସେଇଭଳି,
ଶସ୍ତା ପାଉଡର ଆଉ ସର୍ଫ ଭିତରେ
ନାହିଁ । ସେଇଥିପାଇଁ ସର୍ଫ କିଣିବା
ହିଁ ଅଛି ଅଧିକ ବିଜ୍ଞତା ।"





# ଶ୍ୱାସ ର ଦୁର୍ଗନ୍ଧ ଦୂର କରନ୍ତୁ. ଦାନ୍ତକଣା ର ପ୍ରତିରୋଧ କରନ୍ତୁ.



# କଲଗେଟ ର ସୁରକ୍ଷା-ଚକ୍ର ନଜର କରନ୍ତୁ !

କଲଗେଟରେ ନିୟମିତଭାବେ ଦାନ୍ତ ସଫା କଲେ
ଆପଣଙ୍କ ପରିବାରରେ ସମସ୍ତଙ୍କର ଶ୍ୱାସ ତାଜା ଓ ପରିଷ୍କାର ଏବଂ ଦାନ୍ତ ମଜବୁତ
ଓ ସୁସ୍ଥ ରହେ ଅର୍ଥାତ କଲଗେଟର ସୁରକ୍ଷା ମିଳେ ।

ଦେଖନ୍ତୁ କଲଗେଟର ନିର୍ଭରଯୋଗ୍ୟ ଫର୍ମୁଲା
ଆପଣଙ୍କ ଦାନ୍ତର ସୁରକ୍ଷା କରେ :



ଦାନ୍ତ ସନ୍ଧିରେ ରହିଯାଇଥିବା ଖାଦ୍ୟକଣା
ଦ୍ୱାରା ଶ୍ୱାସରେ ଦୁର୍ଗନ୍ଧ ଓ ଦାନ୍ତ କଣା
କରୁଥିବା ଜୀବାଣୁ ବଢନ୍ତି ।



କଲଗେଟର ଅପୂର୍ବ ପ୍ରଭାବଶାଳୀ ଫେଣ
ଦାନ୍ତ ସନ୍ଧିରେ ଲୁଚିଛପି ରହୁଥିବା ଖାଦ୍ୟକଣା
ଓ ଜୀବାଣୁଙ୍କୁ ବାହାର କରିଦଏ ।



କଲଗେଟରେ ନିୟମିତଭାବେ ଦାନ୍ତ ସଫା
କଲେ ଶ୍ୱାସ ତାଜା ଓ ପରିଷ୍କାର ଏବଂ
ଦାନ୍ତ ମଜବୁତ ଓ ସୁସ୍ଥ ରହେ ।

ରଖନ୍ତୁ ଆପଣଙ୍କ ପରିବାରର ସମସ୍ତେ



# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍‌ଡୀ

---

କାହିଁ କେଉଁ କାଳରୁ ଦୁର୍ଗାପୂଜାର ପରମ୍ପରା ସୃଷ୍ଟି ହେଲଣି । ତଥାପି ତାହା ସବୁଥର ନୂଆ ପରି ଲଗେ, ନୂଆ ପୁଲକ ସୃଷ୍ଟି କରେ । କାହିଁକି ? ଯେହେତୁ ତାହା ଦିବ୍ୟ ଜନନୀଙ୍କ ଆରାଧନା । ତାଙ୍କ ଶକ୍ତି ବିନା କୌଣସି ଉତ୍ତମ କାମ ହୋଇ ପାରେନା । ତେଣୁ ସେ ଚିରକାଳ ଆମର ଆରାଧ୍ୟା ।

## ଅମରବାଣୀ

ଯୋ ଧ୍ରୁବାଣି ପରିତ୍ୟଜ୍ୟ ଅଧ୍ରୁବାଣି ନିଷେବତେ ।
ଧ୍ରୁବାଣି ତସ୍ୟ ନଶ୍ୟନ୍ତି ଅଧ୍ରୁବଂ ନଷ୍ଟମେବ ଚ ॥

[ଯାହା ଧ୍ରୁବ ବା ନିଶ୍ଚିତ, ତାହାକୁ ଛାଡି ଯିଏ ଅନିଶ୍ଚିତ ବସ୍ତୁ ପାଇବା ଆଶାରେ ଧାଏଁ, ସେ ନା ନିଶ୍ଚିତ ବସ୍ତୁକୁ ପାଏ, ନା ଅନିଶ୍ଚିତ ବସ୍ତୁକୁ ପାଏ !]

---

ବର୍ଷ : ୨୦ ଅକ୍ଟୋବର ୧୯୮୨ ଅଙ୍କ : ୪

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

# "Hey Sweeties, look what's new from NP"

**Jelly belly** and **Yogo**

A SOFTY AT HEART — CHEWY ALL THE WAY

## In fruity flavours you've never tasted before




Pop in a Yogo. Chew a creamy dream. Just one toffee. But what a juicy mouthful.

Pop in a Jelly Belly. Rock'n roll around the hard coating. Bite it..... Crunch. The soft centre wins your heart - tang!

Get ready for more. Because you'll never lose your taste... long after they mmmelt.

## ବିଳାସିତାର ସୁଗନ୍ଧ
## ସମୁଚିତ ଦାମରେ...

**ପ୍ରେମ୍ -ସତେଜତା ଆଣିବାର ସାବୁନ**







ଗୋଲାପୀ ଓ ସବୁଜ ରଙ୍ଗରେ ଉପଲବ୍ଧ

Imageads-2107 Or

# ଇନ୍ଦୁମତି

ଅନେକ କାଳ ପୂର୍ବେ ତୃଣବିନ୍ଦୁ ନାମରେ ଜଣେ ଋଷି ଥିଲେ । ବହୁ ବର୍ଷ ତପସ୍ୟା କରି ସେ ଅନେକ ତପଃଶକ୍ତି ଅର୍ଜନ କଲେ । ସେ ଶକ୍ତି ଦ୍ୱାରା କାଳେ ସେ ଇନ୍ଦ୍ରପଦ ଦଖଲ କରି ବସିବେ, ଇନ୍ଦ୍ରଙ୍କୁ ସେହି ଡର ଲାଗିଲା । ତୃଣବିନ୍ଦୁଙ୍କ ତପସ୍ୟା ଭାଙ୍ଗିବା ନିମନ୍ତେ ସେ ହରିଣୀ ନାମକ ଅପ୍ସରାକୁ ପଠାଇଲେ ।

ତପସ୍ୱୀ ତୃଣବିନ୍ଦୁ ଅପ୍ସରାର ଉଦ୍ଦେଶ୍ୟ ବୁଝିପାରି କହିଲେ, "ତମେ ମଣିଷଙ୍କ ଭଳି ଚପଳ ବ୍ୟବହାର କରୁଛ । ତେଣୁ ମଣିଷ ହୋଇଯାଅ !" ହରିଣୀଙ୍କ ପକ୍ଷରେ ଏହା ହେଲା ଅଭିଶାପ । ସେ କ୍ଷମା ମାଗିବାରୁ ତପସ୍ୱୀ କହିଲେ, "ଯେଉଁଦିନ ସ୍ୱର୍ଗ ତମର ସ୍ମରଣ ହେବ, ସେହିଦିନ ତମେ ସେଠାକୁ ଫେରିଯିବ ।"

ଅପ୍ସରା ମଣିଷ ଜନ୍ମ ନେଲେ । ନାମ ହେଲା ଇନ୍ଦୁମତି । ସେ ଅଯୋଧ୍ୟାର ରାଜା ଅଜଙ୍କୁ ବିବାହ କଲେ । ଦଶରଥ ତାଙ୍କର ପୁଅ ।

ଦିନେ ରାଣୀ ଇନ୍ଦୁମତି ଉଦ୍ୟାନରେ ବୁଲୁଛନ୍ତି, ହଠାତ୍ ଗୋଟାଏ ମାଳ ଶୂନ୍ୟରୁ ଆସି ତାଙ୍କ ଉପରେ ପଡ଼ିଲା । ତାହା ପାରିଜାତ ପୁଷ୍ପର ମାଳ; ଶୂନ୍ୟ ମାର୍ଗରେ ଯାଉଥିବା ମୁନି ନାରଦଙ୍କ ବୀଣାରୁ ଖସି ପଡ଼ିଥିଲା । ସେ ମାଳର ସ୍ପର୍ଶରେ ଇନ୍ଦୁମତିଙ୍କର ସ୍ୱଗୃହ ସ୍ୱର୍ଗ ମନେ ପଡ଼ିଲା । ସେ ତତ୍କ୍ଷଣାତ୍ ଜ୍ଞାନ ହରାଇ ପଡ଼ିଗଲେ ଓ ସେହି ଅବସ୍ଥାରେ ଇହଲୀଳା ସମ୍ବରଣ କଲେ ।





# ଯା' ପାଇଁ ମଣିଷ

ପାର୍ବତୀ ନାମରେ ଥାଏ ଜଣେ ଗରିବ ବୁଢ଼ୀ । ସଂସାରରେ ତା'ର ଆଉ କେହି ନଥାନ୍ତି । ସେ ପରିଶ୍ରମ କରି କୌଣସି ମତେ ଚଳି ଯାଉଥାଏ ।

ଦିନେ ସେ ନଈକୂଳରେ ଗୋଟିଏ ପାଞ୍ଚ ବର୍ଷର ପିଲାକୁ ଭେଟିଲା । ପିଲାଟି କାନ୍ଦୁଥାଏ । ଦୂର ଗାଁରୁ ସେ ତା' ବାପା ମା ସହ ଆସି ସହର ଅଭିମୁଖେ ଯାଉଥାଏ । ସହରରେ କାମଧାମ କରି ଚଳିବା ଥିଲା ତା' ବାପା ମା'ଙ୍କ ଉଦ୍ଦେଶ୍ୟ । ବାଟରେ ସେମାନେ ଗୋଟିଏ ମେଳାରେ ପଶିଥାନ୍ତି । ଭିଡ଼ ଭିତରେ ପିଲାଟି ବାପା ମା'ଙ୍କଠୁଁ ଅଲଗା ହୋଇଗଲା । ବାପା ମା' କୁଆଡ଼େ ଗଲେ ସେ ଜାଣିପାରୁ ନଥାଏ ।

ପାର୍ବତୀ ପିଲାଟି ପାଖରେ ବସି ଅନେକ ବେଳଯାଏ କାଳେ ତା' ବାପା ମା ଆସିବେ, ସେଥିପାଇଁ ଅପେକ୍ଷା କଲା । ରାତି ହୋଇ ଆସିବାରୁ ସେ ପିଲାକୁ ଧରି ନିଜ କୁଡ଼ିଆକୁ ଆସିଲା । ନିଜ ପାଇଁ ଯାହା ସାମାନ୍ୟ ଖାଦ୍ୟ ଦ୍ରବ୍ୟ ଥିଲା, ସେଥିରୁ ଅଧା ପିଲାଟିକୁ ଦେଲା । ତା' ଡାକ ନାମ ଝୁଣ୍ଟୁ ।

ପରଦିନ ବି ଝୁଣ୍ଟୁର ବାପା ମା'ଙ୍କ ସନ୍ଧାନ ମିଳିଲା ନାହିଁ । ଝୁଣ୍ଟୁ କାନ୍ଦିବାରୁ ପାର୍ବତୀ କହିଲା, "ତୁ କାନ୍ଦୁଛୁ କାହିଁକି ? ତୋ ବାପା ମା ଯେପରି ଗରିବ, ମୁଁ ବି ସେହିପରି ଗରିବ । ସେମାନଙ୍କ ପାଖରେ ନ ରହି ଏବେ ମୋ ପାଖରେ ରହିଥା । ମୁଁ ତୋ ମା ବୋଲି ଜାଣ । ତୋତେ ଗଣ୍ଡିଏ ଖାଇବାକୁ ଦେଇ ନ ପାରିଲେ ମୁଁ ନିଜେ ବି ଉପବାସରେ ରହିବି ।"

ପିଲାଟି ଆଶ୍ୱସ୍ତ ହେଲା । ପାର୍ବତୀ ତା'ର ଗୋଟିଏ ଭଲ ନାମ ଦେଲା—ସୁକୁମାର ।

ତୋ ପାଇଁ ଭିଖାରୁଣୀ—ମୋ ପାଇଁ ଠାକୁରାଣୀ

ଅନ୍ୟମାନଙ୍କ ଘରେ ଖଟି ପାର୍ବତୀ ଯାହା ପାଏ, ସେଥିରେ ହୁଏତ ଦୁହେଁ ଖାଇପିଇ ଚଳି ଯାଆନ୍ତେ, କିନ୍ତୁ ପାର୍ବତୀ ପିଲାକୁ ପାଠ ପଢ଼ାଇବାକୁ ସ୍ଥିର କଲା । ସେଥିପାଇଁ ସବୁଦିନେ ସନ୍ଧ୍ୟାରେ ସେ ଦେଢ଼କୋଶ ବାଟ ଚାଲି ଚାଲି ଯାଇ ଗୋଟିଏ ମନ୍ଦିର ପାଖରେ ଠିଆ ହୁଏ । ମନ୍ଦିରକୁ ଆସୁଥିବା ଧନୀଲୋକଙ୍କ ପାଖରେ ହାତ ପାତେ । କିଏ ବା କିଛି ପଇସା ଦିଏ, କିଏ ବା ଦିଏ ନାହିଁ । କାହାର ସମୟ ଥିଲେ ସେ କହେ ଯେ ପୁଅକୁ ପାଠ ପଢ଼ାଇବା ନିମନ୍ତେ ସେ ପଇସା ମାଗୁଛି । ସେଥିରେ କେହି କେହି ବେଶି ପଇସା ଦିଅନ୍ତି ।

ସୁକୁମାର ଗାଁ ଚାଟଶାଳୀରେ ଭଲ ପାଠ ପଢ଼ିଲା । ସେଇଠୁ ତାକୁ ବୃତ୍ତି ମିଳିଲା । ପାର୍ବତୀର ଆନନ୍ଦର ସୀମା ରହିଲା ନାହିଁ । ସୁକୁମାର ଯାଇ ବଡ଼ ସ୍କୁଲରେ ଭର୍ତ୍ତି ହେଲା । ସେଠାରେ ବି ସେ ଭଲ ପଢ଼ିଲା । ପଢ଼ା ଶେଷ ହେବାରୁ ପାର୍ବତୀ ଯାଇ ଜମିଦାରଙ୍କୁ ତା' ବିଷୟରେ କହିଲା । ଜମିଦାରଙ୍କ ଘରେ ପାର୍ବତୀ କାମ କରିଥାଏ ଓ ତା'ର ଭଲ ସ୍ୱଭାବ ଯୋଗୁଁ ଜମିଦାର ତା' ଉପରେ ଖୁସି ଥାନ୍ତି । ତା' ଅନୁରୋଧରେ ଜମିଦାର ସୁକୁମାରକୁ ନିଜ ସିରସ୍ତାରେ ଚାକିରି ଦେଲେ । ଦୁଇବର୍ଷ ଭିତରେ ସୁକୁମାର ନିଜ ଦକ୍ଷତା ଯୋଗୁଁ ଜମିଦାରଙ୍କ ପ୍ରିୟପାତ୍ର ହେଲା ଓ ଗୁମାସ୍ତା ମରିଯିବାରୁ ସେ ଗୁମାସ୍ତା ହେଲା ।

ଆଉ ଦୁଇବର୍ଷରେ ସେ ଘର ତୋଳାଇଲା । ପାର୍ବତୀ ସେଇଠୁ ତାକୁ ବାହା କରାଇବା



ନିମନ୍ତେ ତତ୍ପର ହେଲା । ସେଠାରୁ ଦୁଇକୋଶ ଦୂରରେ ଜମିଦାରଙ୍କର ଆଉ ଗୋଟିଏ କଚେରୀ ଥାଏ । ସେ କଚେରୀର ଗୁମାସ୍ତା ଶଙ୍କର-ବାବୁଙ୍କର କଲ୍ୟାଣୀ ବୋଲି ଝିଅଟିଏ ଥାଏ । ଶଙ୍କରବାବୁଙ୍କ ପ୍ରସ୍ତାବ କ୍ରମେ କଲ୍ୟାଣୀ ପାର୍ବତୀ ଘରକୁ ବୋହୂ ହୋଇ ଆସିଲା ।

ଦିନେ ପାର୍ବତୀ ସହ କଲ୍ୟାଣୀ ମନ୍ଦିରକୁ ଯାଇଥାଏ । ମନ୍ଦିର ପାଖରେ ଥିବା ଦୋକାନୀ-ମାନେ ପରସ୍ପର କୁହାକୁହି ହେଉଥାନ୍ତି, "ଦେଖ ଦେଖ, ଭିଖାରୁଣୀର ଭାଗ୍ୟ । ସେଦିନ ହାତ ପାତି ପାହୁଲାଏ ଅଧଲାଏ ମାଗୁଥିଲା, ଆଜି ଘରଦ୍ୱାର ପୁଅ ବୋହୂ କରି ବସିଛି !"

ପାର୍ବତୀ ସେମାନଙ୍କ ଆଡ଼େ ଅନାଇ ହସି ଦେଲା । ଏଭଳି ମନ୍ତବ୍ୟରେ ସେ ଅପମାନ ଅନୁଭବ କରେ ନାହିଁ । କାରଣ ସେମାନେ ସତ କଥା କହୁଥିଲେ ।

କିନ୍ତୁ କଲ୍ୟାଣୀ ଗମ୍ଭୀର ଦେଖାଗଲା । ଘରକୁ ଆସି ସେ ଆଉ ପାର୍ବତୀ ସହ ଭଲ ବ୍ୟବହାର କଲା ନାହିଁ । ଏହାର କିଛିଦିନ ପରେ ପାର୍ବତୀର ବେମାର ହେଲା । କଲ୍ୟାଣୀ ତା'ର ମୋଟେ ଯତ୍ନ ନେଉ ନଥାଏ । କେବେ ପାର୍ବତୀ ସେ ବିଷୟରେ ଥରେ ମଧ୍ୟ ସୁକୁମାର ପାଖରେ ଅଭିଯୋଗ କଲା ନାହିଁ । ସୁକୁମାର ବୈଦ୍ୟ ଡାକି ଚିକିତ୍ସାର ବ୍ୟବସ୍ଥା କରୁଥାଏ ।

ରାତିରେ କଲ୍ୟାଣୀ କହିଲା, "ପର୍ବ ଆସୁଛି । ମୋତେ ଭଲ ସାଢ଼ୀଟିଏ କିଣିଦିଅ ।"

ସୁକୁମାର କହିଲା, "ଏବେ ସମ୍ଭବ ନୁହେଁ । ବୋଉର ବେମାର । କେତେ ଖର୍ଚ୍ଚ ହେବ





ଜାଣେ ନା।" କଲ୍ୟାଣୀ ଖପା ହୋଇ କହିଲା, "ଗୋଟିଏ ଭିଖାରୁଣୀକୁ ବୋଉ ବୋଲି କହିବାକୁ ତମକୁ ଲାଜ ଲାଗୁନାହିଁ? ତମେ ମୋତେ ଚାହଁ ନା ସେ ଭିଖାରୁଣୀକୁ ଚାହଁ?"

ସୁକୁମାର ପ୍ରଥମେ ସ୍ତମ୍ଭୀଭୂତ ହୋଇଗଲା। ତା'ପରେ ଗର୍ଜନ କରି କହିଲା, "ତମର ଶିକ୍ଷା ସ୍ୱଭାବ ଏତେବେ ଏହିପରି? ମୁଁ ଯେ ଆଜି ବଞ୍ଚିରହି ମଣିଷ ହୋଇଛି, ତାହା ସେହି ଭିଖାରୁଣୀ ଯୋଗୁଁ। ଭିଖାରୁଣୀ ନ ହୋଇ ଚୋରୁଣୀ ହୋଇଥିଲେ ବି ସେ ମୋ ବୋଉ। ତମକୁ ଲାଜ ଲାଗିଲେ ପୂର୍ବରୁ ଘର ଦେଖିବା ଉଚିତ ଥିଲା। ନା, ତମ ସାଢ଼ୀ ପାଇଁ ମୁଁ ଭିଖାରୁଣୀର ସେବାରେ ତ୍ରୁଟି କରିପାରିବି ନାହିଁ!"

ସକାଳେ କଲ୍ୟାଣୀ ନିଜ ବାପ ଘରକୁ ଚାଲିଗଲା।

"ଇଏ କ'ଣ? ତୁ ଏମିତି କୁଆଡ଼େ ଆସିଗଲୁ?" ଶଙ୍କରବାବୁ ପଚାରିଲେ।

କଲ୍ୟାଣୀ କାନ୍ଦି କାନ୍ଦି ହୋଇ ସବୁ କହିଗଲା। ଶଙ୍କରବାବୁ ଓ ତାଙ୍କ ପୁଅ ବିଜୟ ନୀରବରେ ସବୁ ଶୁଣିଲେ। ବିଜୟ କିଛି କହିବାକୁ ଯାଉଥିଲା। ଶଙ୍କରବାବୁ ତାକୁ ନୀରବ ରହିବାକୁ ଇଙ୍ଗିତ ଦେଇ କହିଲେ, "ଠିକ୍ ଅଛି, ଝିଅ। ଯେଉଁଦିନ ସୁକୁମାର ବୁଝିବ ଯେ ତୋ ମୂଲ୍ୟ ଭିଖାରୁଣୀଠୁଁ ଅଧିକ, ସେ ଆସି ବଳେ ତୋତେ ନେଇଯିବ!"

କଲ୍ୟାଣୀ ଖୁସି ହେଲା। ଶଙ୍କରବାବୁ କଚେରୀକୁ ବାହାରିଗଲେ। ସନ୍ଧ୍ୟା ସୁଦ୍ଧା ସେ ନ ଆସିବାରୁ ବିଜୟ କହିଲା, "ଆରେ କଲ୍ୟାଣୀ, ବାପା କୁଆଡ଼େ ଗଲେ ହରି କକାଙ୍କ ଘରୁ ବୁଝି ଆସିଲୁ!"

ହରିହର ବି କଚେରୀରେ କାମ କରୁଥିଲେ। କଲ୍ୟାଣୀକୁ ଦେଖି ସେ କହିଲେ, "ଝିଅ, କ'ଣ କହିବି, ଆଜି ତୋ ବାପା ଲାଞ୍ଚ ନେଲାବେଳେ ଧରା ପଡ଼ିଗଲେ। ଚାକିରି ଯାଇଛି। ସେ କୁଆଡ଼େ ଗଲେ କେଜାଣି!"

କଲ୍ୟାଣୀ ମୁଣ୍ଡରେ ହଠାତ୍ ଅବା ଚଡ଼କ ପଡ଼ିଲା। ସେ ଘରକୁ ଫେରୁଛି, ଦେଖିଲା ଘର ପଛ କୂଅ ଉପରେ କିଛି କାଗଜ ରଖିଦେଇ ତା' ବାପା ବଣ ଆଡ଼କୁ ଚାଲି ଯାଉଛନ୍ତି।

କଲ୍ୟାଣୀ ଯାଇ ତାଙ୍କୁ ଧରି ପକାଇ କହିଲା, "ବାପା, ତମେ କୁଆଡ଼େ ଯାଉଛ ?"

"ଝିଅ! ମୋ ଗୃକରୀ ଯାଇଛି । ଆମେ ଚଳିବା କିପରି ? ମୋର ବଞ୍ଚିବାକୁ ଇଚ୍ଛା ନାହିଁ ।"

"ବାପା, ସେପରି କାହିଁକି କହୁଛ ? ତମ ଗୃକରୀ ଗଲେ କ'ଣ ହେଲା, ମୋ ଭାଇର ଗୃକରୀ ତ ଅଛି ।" କଲ୍ୟାଣୀ ଆବେଗଭରା କଣ୍ଠରେ କହିଲା ।

ସେତିକିବେଳେ ବିଜୟ ପହଞ୍ଚି ଯାଇ କହିଲା, "କଲ୍ୟାଣୀ, ପ୍ରଥମେ କ'ହ, ବାପା ଲାଞ୍ଚ ନେବା କ'ଣ ଠିକ୍ ହୋଇଛି ? ସମାଜରେ ଆମ ଇଜ୍ଜତ ରହିବ ? ମୁଁ ତା'ପରେ ତାଙ୍କର ଭରଣ-ପୋଷଣ କରିବା ଠିକ୍ ହେବ ?"

କଲ୍ୟାଣୀ ଉତ୍ତେଜିତ ଭାବରେ କହିଲା, "ଭାଇ! ତମେ କଭଳି ପ୍ରଶ୍ନ ପଚାରୁଛ ? ବାପା ଯାହା କଲେ ବି ସେ ଆମ ବାପା !"

ବିଜୟ ଓ ଶଙ୍କରବାବୁ ହସିଲେ । ବିଜୟ କହିଲା, "ସାବାସ୍ କଲ୍ୟାଣୀ, ସାବାସ୍ ! ଠିକ୍ କହିଛୁ । ବାପା ଯେତେବଡ଼ ଅପରାଧ କଲେ ବି ତୁ ବା ମୁଁ ତାଙ୍କ ସନ୍ତାନ ହୋଇ ରହିଥିବୁଁ । ଆଚ୍ଛା କହିଲୁ, ଲାଞ୍ଚ ନେବାଠୁଁ ବଡ଼ ଅପରାଧ କ'ଣ ଭିଖ ମାଗିବା ?"

କଲ୍ୟାଣୀ ନୀରବ ରହିଲା । ଶଙ୍କରବାବୁ ପୁଣି ହସିଲେ ଓ କହିଲେ, "ମୋର ଗୋଟିଏ ବୋଲି ମା ଛେଉଣ୍ଡ ଝିଅ ବୋଲି କଲ୍ୟାଣୀ ଟିକିଏ ବଦ୍‌ରାଗୀ ହୋଇଛି । ପାର୍ବତୀ ଭିଖ ମାଗି ସୁକୁମାରକୁ ମଣିଷ କରିଥିଲେ । ସୁକୁମାର ଯେ ସେ ଋଣ ଭୁଲିନାହିଁ, ଏହା ତା'ର ମହତ୍ତ୍ୱର ପରିଚୟ । ବୁଝିଲୁ ?"

କଲ୍ୟାଣୀ ଆଖି ପୋଛି ସ୍ୱୀକୃତି ଦେଲା ।

"ତୋତେ ମୁଁ ସାଢ଼ୀ ଆଣିଦେବି । ଚିନ୍ତା କରନା । ବାପା ଲାଞ୍ଚ ନେବା ଲୋକ ନୁହନ୍ତି । ତୋତେ ଶିକ୍ଷା ଦେବା ନିମନ୍ତେ ଆମେ ଏତିକି ଆୟୋଜନ କରିଥିଲୁଁ ।" ବିଜୟ କହିଲା ।

ଏଥର କଲ୍ୟାଣୀ ମୁହଁରେ ବି ହସ ଫୁଟିଲା ।






# ଶନି ଓ ଶୁଭ

ଭରତପୁର ପାଖରେ ଗୋଟାଏ ବଣ ଥିଲା । ଦିନେ ଆମ ଗାଁର ବୀରୁଦାସ ସେ ବଣ ପାଖଦେଇ ଯାଉଛି, ଦେଖିଲା ଜଣେ ଗୁଣ୍ଡାଳିଆ ମଣିଷ ଗୋଟାଏ ପୁରୁଣା ଗଛର ପୋଲ ଗଣ୍ଡି ଭିତରେ ପୁଟୁଳିଟିଏ ଲୁଚାଇ ଦେଉଛି ।

ବୀରୁଦାସ ଗୋଟାଏ ଗଛ ଆଢୁଆଳରେ ଛପି ଗଲା । ସେ ଲୋକ ଯେ ଚୋର ଏବଂ ସେ ପୁଟୁଳି ଯେ କୌଣସି ଚୋରିମାଲ୍, ଏଥିରେ ତା'ର ସନ୍ଦେହ ନଥିଲା ।

ବୀରୁଦାସ ଯେତିକି ଖୁସି ହେଲା, ସେତିକି ମାତ୍ରାରେ ଉତ୍ତେଜନାରେ ଅଧୀର ହେଲା । ଦୈବକୁ ସେ ସେଠାରେ ରହିଥିଲା ସିନା! ଏହାକୁ କହନ୍ତି ସୁବର୍ଣ୍ଣ ସୁଯୋଗ! ହଁ, ସେ ପୁଟୁଳିରେ ସୁବର୍ଣ୍ଣହିଁ ରହିଥିବା ସମ୍ଭବ । ସେ ଧନୀ ହେବାକୁ ଯାଉଛି । ଜ୍ୟୋତିଷ କହୁଥିଲେ ତା'ର ଶନିଦଶା ପଡୁଛି ବୋଲି । ସେ ଭୁଲ୍ କହୁଥିବେ । ଶନିଦଶାରେ ସେ ଏମିତି ଆଖି ପିଛୁଳାକେ ଧନୀ ହୋଇଯିବ କିପରି? ଆଃ, କି ସୌଭାଗ୍ୟ! ପ୍ରଥମେ ସେ ଘରଟିଏ ତୋଳିବ । ଆଉ ସବୁ କଥା ପରେ ଦେଖାଯିବ! ବୀରୁଦାସ କଳ୍ପନା କରି ଚାଲିଲା ।

ଗୁଣ୍ଡାଳିଆ ଲୋକଟି ଚାଲିଯିବା ମାତ୍ରେ ବୀରୁଦାସ ସେ ଗଛ ଭିତରୁ ପୁଟୁଳିଟି ବାହାର କରି ନେବା ଉଦ୍ଦେଶ୍ୟରେ ସେ ଆଡ଼େ ଚାଲିଲା । କିନ୍ତୁ ସେତିକିବେଳେ ଅନ୍ୟ ଦିଗରୁ ଆମ ଗାଁର ଆଉ ଜଣେ ଲୋକ ଜୟରାମ ଆସି ସେଠି ପହଞ୍ଚିଗଲା । ଫଳରେ ବୀରୁଦାସ ପୁଟୁଳିଟି ବାହାର ନ କରି "କିରେ ଜୟରାମ, କୁଆଡ଼େ ଚାଲିଛୁ!" ଏହି ପ୍ରଶ୍ନ କରି ଅପେକ୍ଷା କଲା । ମିନିଟିଏ ପରେ ଦୁହେଁ ଦେଖିଲେ, ଜଣେ ଅଚିହ୍ନା ଲୋକ ଦୌଡ଼ି ଆସି ପୁଟୁଳିଟି ବାହାର କରିନେଇ ପଳାଇଗଲା ।

ଦେଖିଲେ ପଥର; ବୁଝିଲେ ଠାକୁର

"ତୁ ଆଜି ମୋ ପାଇଁ ଶନି ଗ୍ରହ ହେଲୁ !" ଦୀର୍ଘନିଃଶ୍ୱାସ ଛାଡ଼ି ବୀରୁଦାସ ଜୟରାମକୁ କହିଲା ।

"କାହିଁକି ?" ରାଗିଯାଇ ଜୟରାମ ପଚାରିଲା ।

"ଟିକିଏ ଆଗରୁ ଗୋଟାଏ ଚୋର ଆସି ସେ ପୁଟୁଳି ସେଠି ରଖିବାର ମୁଁ ଦେଖିଲି । ତାକୁ ଉଠାଇ ନେବାକୁ ଯାଉଛି, ତୋ ହାବୁଡ଼ରେ ପଡ଼ିଲି । ତୋ ଆଗରେ ସେ କାମ କପରି କରିଥାନ୍ତି ? ଏହି ଦୋଦୋପାଞ୍ଚ ଅବସ୍ଥା ଭିତରେ ତୃତୀୟ ଲୋକଟି ସେ ଧନ ମାରି ନେଇଗଲା !"

ଜୟରାମ କହିଲା, "ତୁ କ'ଣ ମୋ ପାଇଁ ଶନି ରୂପରେ ଦେଖାଦେଇ ନାହୁଁ ବୋଲି ଭାବୁଛୁ ? ମୁଁ ବି ଚୋରଟି ପୁଟୁଳି ରଖିବାର ଦେଖିଥିଲି ଓ ତାକୁ ନେଇଯିବାକୁ ଆସୁଥିଲି । ତୁ ଚଣ୍ଡାଳ ଆସି ବାଟ ଓଗାଳିଲୁ । ଫଳରେ ମୁଁ ସେ ଧନରୁ ବଞ୍ଚିତ ହେଲି !"

"ଓଃ, ତେବେ ଆମେ ଉଭୟ ଉଭୟଙ୍କ ପାଇଁ ଆଜି ଶନି ହୋଇ ଦେଖା ଦେଲୁଁ ! ଅବଶ୍ୟ ମୋର ଶନି ଦଶା ପଡ଼ୁଛି ବୋଲି ମୁଁ ଜାଣେ ।" ବୀରୁଦାସ କହିଲା ।

"ମୋର ବି ପଡ଼ିଥିବ !"

ସେମାନେ ଏମିତି କଥାବାର୍ତ୍ତା ହେଉଛନ୍ତି, ସେପଟୁ କ'ଣ ପାଟି ଶୁଣିଲେ । ଦେଖିବା ବେଳକୁ ଦୁଇଜଣ ସିପାହୀ ଯେଉଁ ଲୋକ ପୁଟୁଳି ନେଇଥିଲା ତାକୁ ଧରି ସେ ଦୁହେଁ ଆସୁଛନ୍ତି । ତା ହାତ ବନ୍ଧା ହୋଇଛି ।



ବିପରୀତ ଦିଗରୁ ମଧ୍ୟ ଆଉ ଦୁଇଜଣ ସିପାହୀ ଆସୁଥିଲେ ।

“କଥା କ’ଣ ସିପାହୀ ବାବୁମାନେ ?” ଜୟରାମ ଓ ଝାଡୁଦାସ ପଚାରିଲେ ।

“ଆରେ ଭାଇ, ରାତିରେ ଜମିଦାରଙ୍କ ଘରୁ ଅଳଙ୍କାର ଚୋରି ହୋଇଗଲା । ଚୋର ଏଇ ବଣୁଆ ମୂଲକରେ ପଶିବାର ଜାଣି ଆମେମାନେ ସବୁଆଡୁ ଧୀରେ ଧୀରେ ଅଗ୍ରସର ହେଲୁଁ । ଶେଷକୁ ଚୋରା ମାଲ୍ ହାତେ ଧରା ପଡ଼ିଗଲା ।” ସିପାହୀମାନେ କହିଲେ ।

“ବାବୁମାନେ ବିଶ୍ୱାସ କରନ୍ତୁ, ମୁଁ ଚୋର ନୁହେଁ । ଚୋର ଏ ପୁଟୁଳି ଗଛ ଦୋହର ଗାତରେ ଥୋଇଦେଇ ଗଲା । ମୁଁ ଉଠାଇ ନେଲି !” ଲୋକଟି ବିକଳରେ କହିଲା ।

ସିପାହୀ ଦୁଇଜଣ ତା’ ପିଠିରେ ଦୁଇଟି ଧକ୍କା ମାରିଲେ ଓ କହିଲେ, “ଚୋର ତୋତେ ଜୁଆଇଁ କରିବ ବୋଲି ଆଗତୁରା ଯୌତୁକ ଦେଇ ଯାଇଥିବ ! ବଦ୍‌ମାସ୍, ମିଥ୍ୟାବାଦୀ !”

ଏହାପରେ ସେମାନେ ସେ ଲୋକକୁ ଟାଣିନେଇ ଚାଲିଗଲେ ।

ଝାଡୁଦାସ ଓ ଜୟରାମ ପରସ୍ପର ଅନାଇ ହସିଲେ ।

“କରେ ଝାଡୁ, ମୁଁ ତୋ ପାଇଁ ଶନି ହୋଇଥିଲି ନା ଶୁଭ ହୋଇଥିଲି !” ଜୟରାମ ପଚାରିଲା ।

“ତୁ କହୁନୁ ମୁଁ ତୋ ପାଇଁ ଶନି ହେଲି ନା ଶୁଭ ହେଲି ! ବର୍ତ୍ତମାନ ତ ବନ୍ଧା ହୋଇ ଯାଉଥାନ୍ତୁ !” ଝାଡୁଦାସ କହିଲା ।

“ତୋତେ ମାଲ୍ ସମେତ ପାଇଥିଲେ କ’ଣ ସେମାନେ ଫୁଲ ଚନ୍ଦନ ଦେଇ ନେଇ ଯାଇଥାନ୍ତେ ପୁଅ ?” ଜୟରାମ ତାକୁ ଏପରି ଜବାବ୍ ଦେଲା ।

“ମୁଁ ଦେଖୁଛି ଶନି ଦେବତା କିଛି ଖରାପ କରିବା ତ ଦୂରର କଥା, ସେ ବି ରକ୍ଷା କରନ୍ତି ।” ଝାଡୁଦାସ ମନ୍ତବ୍ୟ ଦେଲା ଓ ଶନିଙ୍କ ଉଦ୍ଦେଶ୍ୟରେ ଜୁହାର ହେଲା ।





# ବହ୍ନି ଦ୍ୱୀପ

[୪]

[ଚିତ୍ରସେନ୍ ହଠାତ୍ ଅରଣ୍ୟରାଜ୍ୟର ରାଜା ହୋଇ ବସିବା ପରେ ସେଠାକାର ପ୍ରଜାମାନେ ତାଙ୍କ ପାଖରେ ଅଭିଯୋଗ କଲେ କି ରାକ୍ଷସ ଉଗ୍ରାକ୍ଷ ମଣିଷ ଓ ପଶୁମାନଙ୍କୁ ଧରିନେଇ ଯାଉଛି । ଚିତ୍ରସେନ ଯାଇ ଉଗ୍ରାକ୍ଷର ବାସସ୍ଥାନରେ ପହଞ୍ଚି ଏ ବିଷୟରେ ପ୍ରଶ୍ନ କରିବାରୁ ରାକ୍ଷସ କହିଲା କି ତା' ଅନୁଚରମାନେ ମଣିଷମାନଙ୍କୁ ନିଅନ୍ତି ନାହିଁ । ବହ୍ନି ଦ୍ୱୀପରୁ ଆସୁଥିବା ଭୟଙ୍କର ଜୀବମାନେ ସେ କାମ କରନ୍ତି । ଚିତ୍ରସେନ ସେ ଜୀବଙ୍କୁ ଦେଖିବା ନିମନ୍ତେ ସେଠାରେ ରାତ୍ରି ଯାପନ କଲେ । ତାପରେ...]

ଉଗ୍ରାକ୍ଷ ଚିତ୍ରସେନ ଓ ତାଙ୍କ ଅନୁଚରମାନଙ୍କୁ ସ୍ୱାଗତ କରି ନିଜ ଦୁର୍ଗ ଭିତରକୁ ନେଇଗଲା । ପ୍ରଥମେ ସେ ରାକ୍ଷସମାନେ ବ୍ୟବହାର କରୁଥିବା ନାନା ହାତ ହତିଆର ଦେଖାଇଲା । ସେସବୁ ଯେପରି ବୃହତ୍, ସେହିପରି ଭୟଙ୍କର । ତା'ପରେ ରାକ୍ଷସ ଉଗ୍ରାକ୍ଷ ସେମାନଙ୍କୁ ତା'ର ବିପୁଳ ସମ୍ପଦ ଦେଖାଇଲା । ସେସବୁ ରାଶି ରାଶି ହୀରା ନୀଳା, ମଣିମାଣିକ୍ୟ ଦେଖି ଚିତ୍ରସେନଙ୍କ ଆଖି ଖୋସି ହୋଇଗଲା । ସେସବୁରେ ରାକ୍ଷସର କ'ଣ ପ୍ରୟୋଜନ, ତାହା ସେ ବୁଝିପାରିଲେ ନାହିଁ । ସେ ପଚାରିଲେ, "ରାକ୍ଷସ ! ତମେ ଏସବୁ ନେଇ କରିବ କ'ଣ ?"

ଚନ୍ଦସେନଙ୍କ ପ୍ରଶ୍ନ ଶୁଣି ଉଗ୍ରାକ୍ଷ ହସିଲା ଓ କହିଲା, "ଭବିଷ୍ୟରେ ଯେବେ ଆମ ରାକ୍ଷସ ଜାତି ତମମାନଙ୍କ ଭଳି ସଭ୍ୟ ହୋଇ ବେପାର ବଣିଜ ନ କରିବ, ଏକଥା କିଏ କହିବ? ସେତେବେଳେ ଏସବୁ ସମ୍ପଦ କାମରେ ଲାଗିବ। ତା' ଛଡ଼ା ଆଜିଠାରୁ ଅଠର ବର୍ଷ ପରେ ଗୋଟିଏ ବିଶେଷ ଘଟଣା ଘଟିବାର ଅଛି। ତାହାକୁ ଆଖି ଆଗରେ ରଖି ମୁଁ ମୋ ଦୁର୍ଗରେ ଏସବୁ ଧନ ସଞ୍ଚୟ କରି ରଖୁଛି।"

ଅଠର ବର୍ଷ ପରେ କୌଣସି ବିଶେଷ ଘଟଣା ଘଟିବ, ଏକଥା ଶୁଣିବା ମାତ୍ରେ ରାକ୍ଷସ ତାଙ୍କ ସହ ରଖିଥିବା ସର୍ତ୍ତ କଥା ଚନ୍ଦସେନଙ୍କର ମନେ ପଡ଼ିଗଲା। ତାଙ୍କ ପୁଅକୁ ଅଠର ବର୍ଷ ପରେ ତାକୁ ସମର୍ପି ଦେବାକୁ ଉଗ୍ରାକ୍ଷ କହିଛି ଓ ସେ ରାଜି ହୋଇଛନ୍ତି। ତେବେ ସେକଥା ସେ ରଖିବେ ବୋଲି କ'ଣ ଉଗ୍ରାକ୍ଷ ସତରେ ବିଶ୍ୱାସ କରୁଛି?

କୌଣସି ରାଜା ତା' ପୁଅକୁ ରାକ୍ଷସକୁ ସମର୍ପି ଦେଇପାରେ? ଏଭଳି ନିଷ୍ଠୁର କାର୍ଯ୍ୟ ସେ କରିବେ ବୋଲି ରାକ୍ଷସ ଉଗ୍ରାକ୍ଷ ଭାବୁଥିଲେ ସେ ନିଜେ ବୋକା ବନୁଛି।

ତେବେ ଚନ୍ଦସେନ ସେତେବେଳେ ନିଜ ଚିନ୍ତା ପ୍ରକାଶ କଲେ ନାହିଁ। ମନକଥା ମନରେ ରଖିଲେ।

ଚନ୍ଦସେନ ବୁଲି ବୁଲି ଉଗ୍ରାକ୍ଷର ଶିଳା ଦୁର୍ଗର ଭିନ୍ନ ଭିନ୍ନ ଅଂଶ ଦେଖୁଥାନ୍ତି। ବୁଲୁଁ ବୁଲୁଁ ସୂର୍ଯ୍ୟାସ୍ତ ହେଲା। ଉଗ୍ରାକ୍ଷ ଅତିଥି ଚନ୍ଦସେନ ଓ ତାଙ୍କ ଅନୁଚରମାନଙ୍କୁ ଖୁବ୍ ଭଲ ଭାବରେ



ଖୁଆଇଲ । ତେବେ ଖିଆପିଆ ଚାଲିଥିବା ବେଳେ ଜଣେ ରାକ୍ଷସ-ସେବକ ଆସି ଉଗ୍ରାକ୍ଷକୁ କହିଲ, "ଆଜ୍ଞା ! ଯେଉଁ ଭୟଙ୍କର ପକ୍ଷୀ ଉପରେ ବସି ବହ୍ନି ଦ୍ୱୀପର ବାସିନ୍ଦାମାନେ ଆସନ୍ତି, ସେହିପରି ଗୋଟିଏ ପକ୍ଷୀ ଲୁମ୍ବିନୀ ଅଞ୍ଚଳରେ ଦେଖା ଦେଇଛି । ଏକଥା ସେଠାରେ ଥିବା ଆମ ଚର ନିଆଁ ହୁଳା ଦେଖାଇ ସଙ୍କେତରେ ଜଣାଇ ଦେଇଛି ।"

ସେ ଖବର ପାଇ ଉଗ୍ରାକ୍ଷ ଚନ୍ଦ୍ରସେନଙ୍କୁ କହିଲ, "ଚାଲ, ବିଳମ୍ବ ନକରି ଆମେ ସଙ୍ଗେ ସଙ୍ଗେ ବାହାରିଯିବା । ତମ ପ୍ରଜାମାନଙ୍କୁ ଉଠାଇ ନେଇ ଯାଉଥିବା ଦୁଷ୍ଟର ଆଗମନ ଘଟିଲଣି ।"

ସମସ୍ତେ ତରତର ହୋଇ ଭୋଜନ ଶେଷ କରି ଉଗ୍ରାକ୍ଷର ଅନୁସରଣ କଲେ । ଉଗ୍ରାକ୍ଷ କିଛିଦୂର ଯିବା ପରେ ଅଳ୍ପ ସଶସ୍ତ୍ର ସୈନ୍ୟଙ୍କୁ ସାଥିରେ ରଖିଲ ଓ ଅନ୍ୟମାନଙ୍କୁ ଅନ୍ୟ ଦିଗକୁ ପଠାଇଲ ।

ଚନ୍ଦ୍ରସେନ ବହ୍ନି ଦ୍ୱୀପର ଆଗନ୍ତୁକମାନଙ୍କୁ ଦେଖିବା ନିମନ୍ତେ ଉତ୍କଣ୍ଠା ଓ ଆଗ୍ରହ ଅନୁଭବ କରୁଥାନ୍ତି । ରାକ୍ଷସମାନଙ୍କୁ ଭୟଭୀତ କରିଥିବା ସେ ଜୀବମାନେ କେଡ଼େ ଭୀଷଣ ହୋଇଥିବେ !

ଦୁର୍ଗ ପାରି ହୋଇ ଚନ୍ଦ୍ରସେନ ଓ ଉଗ୍ରାକ୍ଷ ପୂର୍ବ ଦିଗର ଜଙ୍ଗଲ ପଥରେ କିଛିଦୂର ଅଗ୍ରସର ହେଲେ । ହଠାତ୍ ସମସ୍ତେ ସ୍ତବ୍ଧ ଭାବରେ ଠିଆ ହୋଇଗଲେ । ଦୁର୍ଗ ଅଞ୍ଚଳରୁ ଭୀଷଣ ଶବ୍ଦ ଆସିଲ । ଡେଣା ପିଟିବାର ଶବ୍ଦ ସାଙ୍ଗକୁ ଅନେକ କଣ୍ଠର ଚିତ୍କାର ବି ଶୁଭୁଥାଏ ।






ସମସ୍ତେ ଦୁର୍ଗ ଆଡ଼େ ଅନାଇଲେ । ଦୁର୍ଗ ଉପରେ ପ୍ରକାଣ୍ଡ ଡେଣା ମେଲି କେତେକ ଅଦ୍ଭୁତକାୟ ପକ୍ଷୀ ଉଡୁଥିବାର ସମସ୍ତେ ଦେଖି-ପାରିଲେ । ଦୁର୍ଗର ରକ୍ଷୀମାନେ ମଶାଲ୍ ମାନ ଉପରକୁ ଟେକି ସେମାନଙ୍କୁ ଘଉଡ଼ାଇଦେବା ନିମନ୍ତେ ଚେଷ୍ଟା କରୁଥିଲେ । ଯୋଦ୍ଧମାନେହିଁ ଚିତ୍କାର କରୁଥିଲେ ।

"ଉଗ୍ରାକ୍ଷ! ଏ ବିକଟ ପକ୍ଷୀମାନେ କ'ଣ ତମ ଦୁର୍ଗ ଦଖଲ କରିବାକୁ ଚେଷ୍ଟା କରୁଛନ୍ତି? ସେମାନଙ୍କ ଉଦ୍ଦେଶ୍ୟ ବାସ୍ତବିକ କ'ଣ ?" ଚନ୍ଦ୍ରସେନ ପଚାରିଲେ ।

"ପକ୍ଷୀମାନେ କିଛି କରୁ ନାହାନ୍ତି । ସେମାନଙ୍କ ଉପରେ ସବାର ହୋଇଥିବା ଜୀବମାନେ ଦୁର୍ଗ ଦଖଲ କରିବାକୁ ଇଚ୍ଛା କଲେ କରୁଥିବେ । ପୂର୍ବରୁ ଥରେ ସେମାନେ ସେପରି ଉଦ୍ୟମ କରିଥିଲେ । ସେତେବେଳେ ଆମ ରାକ୍ଷସ ସୈନିକମାନେ ଲମ୍ବ ଲମ୍ବ ବାଡ଼ି ଓ ମଶାଲ୍ ସାହାଯ୍ୟରେ ସେମାନଙ୍କୁ ଘଉଡ଼ାଇ ଦେଇଥିଲେ । ଏପରିକି ଗୋଟିଏ ଆରୋହୀ ଖସି ପଡ଼ିଥିଲା ମଧ୍ୟ । ଆମେ ତାକୁ ବାନ୍ଧି ପକାଇ ଚାବୁକାରେ କେତେଥର ବୁଲାଇବାରୁ ସେ ନିଜ ସମ୍ପର୍କରେ ଅଳ୍ପ କିଛି କହିଥିଲା । ତା'ଠାରୁ ଆମେ ଅଧିକ ତଥ୍ୟ ବାହାର କରି ପାରିବା ପୂର୍ବରୁ ସେ ମରିଗଲା । ତା' ସାଥୀମାନେ ଆମ ଉପରେ ଦାଉ ସାଧିବା ମତଲବ୍ ରେ ଅଛନ୍ତି । ଏଇଆ ହେଲା କଥା । ତେବେ ଏମାନେ ଆମ ଦୁର୍ଗ ଉପରେ ଅବତରଣ କରିବାକୁ ସାହସ କରିବେ ନାହିଁ ।" ଉଗ୍ରାକ୍ଷ ଉତ୍ତର ଦେଲା ।

ଉଗ୍ରାକ୍ଷର କଥା ଶେଷ ହେବା ସଙ୍ଗେ ସଙ୍ଗେ ସେମାନେ ଯେଉଁ ସବୁ ଗଛତଳେ ଠିଆ ହୋଇଥିଲେ, ସେସବୁ ଗଛ ଦୋହଲିବାକୁ ଲାଗିଲା । ସେମାନେ ଦେଖିଲେ ଅଳ୍ପ ଦୂରରେ ଦୁଇଟି ଅଦ୍ଭୁତକାୟ ପକ୍ଷୀ ବସିଲେ । ସେମାନଙ୍କ ଉପରୁ ବ୍ୟାଘ୍ରଚର୍ମଧାରୀ ଗୃରଜଣ ମଣିଷ ଭଳି ଜୀବ ଓହ୍ଲାଇ ପଡ଼ିଲେ ।

ଉଗ୍ରାକ୍ଷ, ଚନ୍ଦ୍ରସେନ ଏବଂ ସେମାନଙ୍କ ଅନୁଚରମାନେ ସଙ୍ଗେ ସଙ୍ଗେ ବଣବୁଦା ଆଢ଼ୁଆଳରେ ଲୁଚିଗଲେ । ସେ ବାଘୁଆ



ଲୋକେ ଚାରିଆଡ଼କୁ ଅନାଇଲେ । କାହାକୁ ନ ଦେଖି ସେମାନେ ପରସ୍ପର ମନ୍ତ୍ରଣା କଲେ ଓ ଗୋଟାଏ ଦିଗରେ ଅଗ୍ରସର ହେଲେ । ସେମାନଙ୍କ ପଛେ ପଛେ ସେ ଅତିକାୟ ପକ୍ଷୀ ଦୁଇଟି ଡେଣା ଝପଟାଇ ଚାଲିଲେ ।

ସେମାନେ ଉଡୁଥିଲେ ବୋଲି ସିନା ସେମାନଙ୍କୁ ପକ୍ଷୀ ବୋଲି କୁହାଯାଉଛି, ପ୍ରକୃତରେ ସେମାନଙ୍କୁ ପକ୍ଷୀ ବୋଲି କହିବାର ଅର୍ଥ ବିଶେଷ ନାହିଁ । ସେମାନଙ୍କ ନାକ ଓ ଦାନ୍ତ ଭୀଷଣ ଦେଖାଯିବା ସଙ୍ଗେ ସଙ୍ଗେ ସେମାନଙ୍କର ଠିକ ଠିକ ଲାଞ୍ଜ ବି ଥିଲା । ସେମାନଙ୍କ ଉଚ୍ଚତା ପ୍ରାୟ ଆଠ ଫୁଟ ।

ଉଗ୍ରାକ୍ଷ ଚନ୍ଦ୍ରସେନଙ୍କୁ ଧୀର କଣ୍ଠରେ କହିଲା, "ସେ ବ୍ୟାଘ୍ରଚର୍ମଧାରୀ ପ୍ରାଣୀଙ୍କୁ ଭୟ କରିବାର କାରଣ ନାହିଁ । ଭୟ ଏହି ପକ୍ଷୀମାନଙ୍କୁ । ଏ ପ୍ରାଣୀମାନେ ସେ ଆଦିବାସୀ ମାନଙ୍କର ବାହକ ମାତ୍ର ନୁହନ୍ତି, ରକ୍ଷକ ମଧ୍ୟ । ଆମେ ସେ ଆଦିବାସୀମାନଙ୍କୁ ଧରିବାକୁ ଚେଷ୍ଟା କଲେ ଏ ପକ୍ଷୀମାନେ ଆମକୁ ଆକ୍ରମଣ କରି କ୍ଷତବିକ୍ଷତ କରି ଦିଅନ୍ତି । ଆମର ଜଣେ ଅନୁଚର ଏ ପକ୍ଷୀଙ୍କ କବଳରେ ପଡି ଜୀବନ ଦେଇଛି ମଧ୍ୟ ।

ସେ ବାଘୁଆ ଲୋକ ଦୁଇଟି ବଣ ଭିତର ଦେଇ ଅଗ୍ରସର ହେଉଥାନ୍ତି । ଅତିକାୟ ପକ୍ଷୀ ଦୁଇଟି ଦୋହଲି ଦୋହଲି ସେମାନଙ୍କ ପଛରେ ଚାଲିଥାନ୍ତି ।

"ଏ ପ୍ରାଣୀ ଦୁଇଟି ଆଗରେ ଦିଶୁଥିବା ପାହାଡ଼ ତଳ ବସ୍ତି ଆଡ଼େ ଚାଲିଛନ୍ତି । କେତେଜଣ ନିରୀହ ଲୋକ ଆଜି ହରଣଚାଲ ହୋଇଯିବେ!" ଉଗ୍ରାକ୍ଷ କହିଲା ।

"ସେମାନେ ସେ କାମ କରିବେ, ଆଉ ଆମ୍ଭେ କେବଳ ଅନାଇ ରହିଥିବା? ମୋ ପ୍ରଜାଙ୍କୁ ରକ୍ଷା କରିବାର କୌଣସି ଉପାୟ ନାହିଁ?" ଚନ୍ଦ୍ରସେନ ଉତ୍କଣ୍ଠିତ ଭାବରେ ପଚାରିଲେ ।

ଅମର୍ଷ ଭରେ ରାକ୍ଷସ ଉଗ୍ରାକ୍ଷ କହିଲା, "ବାସ୍ତବିକ, ଆମେ କିଛି କରି ପାରିବା ନାହିଁ । ଯଦି ବର୍ଦ୍ଧି ଦ୍ୱୀପର ଏ ପ୍ରାଣୀମାନଙ୍କୁ ଏକୁଟିଆ ପାଆନ୍ତି, ଅର୍ଥାତ୍, ଏ ପକ୍ଷୀମାନେ ଯଦି




ସାଙ୍ଗରେ ନଥାନ୍ତେ, ତେବେ ସିଧା ସେମାନଙ୍କୁ ଗୋଟେଇ ଖାଇ ପକାନ୍ତ।”

ଉଗ୍ରାକ୍ଷ ଓ ଚନ୍ଦ୍ରସେନ କଥାବାର୍ତ୍ତା କରୁଁ କରୁଁ ଟିକିଏ ଆଗେଇ ଯାଇ ଗହଳ ଲତା ପତ୍ରପୂର୍ଣ୍ଣ ଗୋଟିଏ ଗଛ ମୂଳରେ ଠିଆ ହୋଇଥିଲେ। ହଠାତ୍ ଗୋଟାଏ ପେଚା ଅତ୍ୟନ୍ତ ବିକୃତ କଣ୍ଠରେ ରାବିଲା। ସତେ ଅବା ସେ କୌଣସି ସଙ୍କେତ ଦେଉଛି! ଆଗରେ ଥିବା ବାଘୁଆ ଲୋକେ ଚମକି ପଡ଼ି ପଛକୁ ଅନାଇଲେ। ସେମାନଙ୍କ ହାତରେ ଭଲ୍ଲ ଚକ୍‌ମକ୍ କଲା। ସେ ଅତିକାୟ ପକ୍ଷୀ ଦୁଇଟି ମଧ୍ୟ ବିକଟ ଶବ୍ଦ କଲେ।

“ସେମାନେ ଆମକୁ ଦେଖି ପକାଇଛନ୍ତି ବୋଲି ମନେ ହୁଏ!” ଉଗ୍ରାକ୍ଷ ଚନ୍ଦ୍ରସେନଙ୍କ ଆଡ଼େ ଅନାଇ କହିଲା। ତା’ପରେ ସେ ତରବରରେ ତା’ ଅନୁଚରମାନଙ୍କୁ କିଛି ନିର୍ଦ୍ଦେଶ ଦେଲା। ସେମାନେ ଦୁଇ ଦଳ ହୋଇ ସେଠାରୁ ଚାଲିଗଲେ।

ପର ମୁହୂର୍ତ୍ତରେ ଦେଖାଗଲା ସେ ଅତିକାୟ ପକ୍ଷୀ ଦୁଇଟି ଉଗ୍ରାକ୍ଷ ଓ ଚନ୍ଦ୍ରସେନଙ୍କ ଆଡ଼କୁ ମାଡି ଆସୁଛନ୍ତି। ପକ୍ଷୀଙ୍କ ପଛେ ପଛେ ବାଘୁଆ ଲୋକ ଦୁଇଟି ଭଲ୍ଲ ଟେକି ଦୌଡି ଆସୁଥିଲେ।

ଚନ୍ଦ୍ରସେନ ତରବାରି ବାହାର କଲେ। ଉଗ୍ରାକ୍ଷ ନିଜ ପଥର ଗଦା ଉଠାଇ ଗର୍ଜନ କରି ଆଗକୁ କୁଦି ପଡ଼ିଲା। ତା’ ଗଦା ପ୍ରହାରରେ ଗୋଟିଏ ପକ୍ଷୀ ତଳେ ପଡ଼ିଗଲା। କିନ୍ତୁ ଅନ୍ୟ ପକ୍ଷୀଟି ପ୍ରଚଣ୍ଡ ବେଗରେ ତା’ ଉପରକୁ କୁଦିପଡ଼ି ତା’ କାନ୍ଧରେ ବସି ତା ମୁଣ୍ଡରେ ଥଣ୍ଟ ଦ୍ୱାରା ଆଘାତ କରିବାକୁ ଲାଗିଲା।

ସେହି ସୁଯୋଗରେ ଉଗ୍ରାକ୍ଷର ରାକ୍ଷସ ଅନୁଚରମାନେ ଆସି ବାଘୁଆ ଲୋକଙ୍କୁ ଆକ୍ରମଣ କଲେ। ଭୀଷଣ ଲଢ଼େଇ ଲାଗିଗଲା। ଚନ୍ଦ୍ରସେନ ଆଗକୁ ଯାଇ ଜଣେ ବାଘୁଆକୁ ଶେଷ କରିଦେଲେ।

ଉଗ୍ରାକ୍ଷ ନିଜ କ୍ଷତ ପ୍ରତି ଦୃଷ୍ଟି ନଦେଇ ଅତିକାୟ ପକ୍ଷୀ ସହ ଯୁଦ୍ଧ କରୁଥାଏ। ଖାଲି ଉଗ୍ରାକ୍ଷ ଯେ ଆହତ ହୋଇଥାଏ, ତାହା ନୁହେଁ, ତା’ର ଅନେକ ସେବକ ମଧ୍ୟ ରକ୍ତାକ୍ତ ହୋଇ ଯାଇଥାନ୍ତି। କେହି କେହି ତଳେ ପଡ଼ିଯାଇ ଆଉ ଉଠିପାରୁ ନଥାନ୍ତି।

ଚନ୍ଦ୍ରସେନଙ୍କ ତରବାରି ମାଡ଼ରେ ଜଣେ ମାତ୍ର ବାଘୁଆ ମରିଥିଲା । ସେ ଯେତେବେଳେ ଅନ୍ୟ ତିନିଜଣଙ୍କ ଆଡ଼କୁ ତରବାରି ବୁଲାଇ ମାଡ଼ିଗଲେ, ସେମାନେ ବିଚିତ୍ର ସ୍ୱରରେ ସିଟି ବଜାଇ ପଛକୁ ଘୁଞ୍ଚିଗଲେ । ସଙ୍ଗେ ସଙ୍ଗେ ଅତିକାୟ ପକ୍ଷୀ ଦୁଇଟି ଆସି ସେମାନଙ୍କ ଆଗରେ ଠିଆ ହୋଇଗଲେ ଏବଂ ସେମାନେ ବି ପଛକୁ ଘୁଞ୍ଚିବାକୁ ଲାଗିଲେ । ଉଗ୍ରାକ୍ଷ ନିଜର ପ୍ରଚଣ୍ଡ ଗଦା ବୁଲାଇ ଗୋଟିଏ ପକ୍ଷୀ ଆଡ଼କୁ ଫିଙ୍ଗିଲା ବେଳକୁ ସେ ପକ୍ଷୀ ତାକୁ ଅକ୍ଲେଶରେ ନିଜ ଥଣ୍ଟରେ ଧରି ପକାଇ ତଳକୁ ପକାଇ ଦେଲା ।

ବାଘୁଆମାନେ ଦୁଇ ପକ୍ଷୀ ଉପରେ ଯଥାଶୀଘ୍ର ସବାର୍ ହୋଇଗଲେ ଓ ପକ୍ଷୀ ଦୁଇଟି ଡେଣା ପିଟି ଆକାଶକୁ ଉଠିଗଲେ ।

ଉଗ୍ରାକ୍ଷ ପାଖକୁ ଯାଇ ଚନ୍ଦ୍ରସେନ ତାଙ୍କୁ ପଚାରିଲେ, "ତୁମର ଆଘାତ ଖୁବ୍ ମାରାତ୍ମକ ନୁହେଁ ତ ?"

ଉଗ୍ରାକ୍ଷ କହିଲା, "ମୋ ଜୀବନ ପ୍ରତି ଅବଶ୍ୟ ଆଶଙ୍କା ନାହିଁ, କିନ୍ତୁ ଆଠ ଦଶଦିନ ଶଯ୍ୟାଶାୟୀ ହୋଇ ରହିବାକୁ ପଡ଼ିବ । ଆଚ୍ଛା, ମୋର କେତେଜଣ ଅନୁଚର ମରିଛନ୍ତି ?"

"ଦୁଇଜଣଙ୍କୁ ପକ୍ଷୀ ଚିରି ପକାଇଛି । ଆଉ ଚାରିଜଣ ବିଶେଷ ଆଘାତ ପାଇଛନ୍ତି ।" ଚନ୍ଦ୍ରସେନ କହିଲେ ।

"ଶତ୍ରୁ ପକ୍ଷର କେବଳ ଜଣେ ମରିଛି ?" ଉଗ୍ରାକ୍ଷ ପଚାରିଲା ।

"ହଁ ।" ଏହି ଉତ୍ତର ଦେଇ ଚନ୍ଦ୍ରସେନ ନିଜ ସୈନିକମାନଙ୍କୁ ଅନାଇ କହିଲେ, "ତମମାନଙ୍କଠାରୁ ଯେପରି ବୀରତ୍ୱର ଆଶା କରୁଥିଲି, ତାହା ପାଇଲି ନାହିଁ । ତମେମାନେ ଯଥାର୍ଥ ସାହସର ପରିଚୟ ଦେଇ ନାହଁ ।"

ସୈନିକମାନେ ମୁଣ୍ଡ ତଳକୁ କରି ରହିଲେ । ଉଗ୍ରାକ୍ଷ ଦୁଇଜଣ ରାକ୍ଷସ-ସେବକ କାନ୍ଧରେ ଭର ଦେଇ ଠିଆ ହେଲା ଓ ତା' ଦୁର୍ଗ ଆଡ଼େ ଚାଲିଲା । (କ୍ରମଶଃ)





# ଲୋଭ ନା ବିବେକ?

ନିଶା ଗରଜୁଥାଏ । ଝୁହାଲୁ ଝୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତା'ପରେ ଶବଟିକୁ କାନ୍ଧରେ ପକାଇ ରାଜା ସେ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ଏ ଭୟଙ୍କର ରାତିରେ ତୁମେ ଯେପରି ପରିଶ୍ରମ କରୁଛ, ତାହା ଅସାଧାରଣ ସାହସ ଓ ଶକ୍ତିର ପରିଚୟ

## ବେତାଳ କଥା



ଦେଉଛି । କିନ୍ତୁ ଅନେକ ସମୟରେ ଦେଖାଯାଏ ଲୋକେ ଅସଲ ସମୟରେହିଁ ଭୁଲ କରି ବସନ୍ତି । ତୁମେ ସେପରି କରିବ ନାହିଁ ତ ? ଗୋଟିଏ ଦୃଷ୍ଟାନ୍ତ ଦେଉଛି । ମନ ଦେଇ ଶୁଣ । ଶୁଣିଲେ ଶ୍ରମଟିର ଲାଘବ ମନେ ହେବ ।"

ବେତାଳ କହିଲା :

ଶିବପୁର ସହରରେ ରମାନନ୍ଦ ନାମକ ଜଣେ ବ୍ୟବସାୟୀ ଥିଲେ । ତାଙ୍କର ଦୁଇ ପୁଅ ଥିଲେ; ନାମ କୁମାର ଓ ଜୟଦେବ । କୁମାର ଦେଖିବାକୁ ସୁନ୍ଦର, ହେଲେ ଭୀଷଣ ଅଳସୁଆ । ଜୟଦେବ ଦେଖିବାକୁ ସୁନ୍ଦର ନୁହେଁ, କିନ୍ତୁ ବୁଦ୍ଧିମାନ ଓ ବିବେକୀ ।

ରମାନନ୍ଦଙ୍କ ସ୍ତ୍ରୀ ମରିଗଲେ । ସେ ନିଜେ ମଧ୍ୟ ଅଧିକ ଦିନ ବଞ୍ଚିବେ ନାହିଁ, ଏହି ଧାରଣାରେ ଦୁଇ ପୁଅଙ୍କୁ ଶୀଘ୍ର ବିବାହ କରାଇବାକୁ ସ୍ଥିର କଲେ । ସେହି ସହରରେ ଥିଲେ ସୁଧାକର ନାମକ ଆଉ ଜଣେ ବେପାରୀ । ତାଙ୍କର ଦୁଇଜଣ ଝିଅ ଥିଲେ । ଦୁହେଁ ଖୁବ୍ ସୁନ୍ଦରୀ ।

ସୁଧାକର ତାଙ୍କର ଦୁଇ ଝିଅଙ୍କୁ ରମାନନ୍ଦଙ୍କର ଦୁଇ ପୁଅ ସହ ବିବାହ ଦେବାର ପ୍ରସ୍ତାବ ପକାଇଲେ । ରମାନନ୍ଦ ଏଥିରେ ଆନନ୍ଦରେ ରାଜି ହେଲେ ।

ସୁଧାକରଙ୍କ ବଡ଼ ଝିଅ ଅବଶ୍ୟ କୁମାରକୁ ବିଭା ହେବା ନିମନ୍ତେ କୌଣସି ଆପତ୍ତି କଲା ନାହିଁ, କିନ୍ତୁ ସାନଝିଅ ଜୟଦେବକୁ ବିଭା ହେବାକୁ ମନା କରିଦେଲା । କାରଣ, ଜୟଦେବ ଦେଖିବାକୁ ଭଲ ନୁହେଁ । ଜୟଦେବ ଏଥିରେ ବହୁତ ଦୁଃଖ ପାଇଲା, କିନ୍ତୁ କିଛି କହିଲା ନାହିଁ ।

କୁମାର ସହ ସୁଧାକରଙ୍କ ବଡ଼ ଝିଅର ବାହାଘର ହୋଇଗଲା । ଏହାର କିଛିଦିନ ପରେ ରମାନନ୍ଦ ପରଲୋକ ଗମନ କଲେ ।

ଜୟଦେବ ମନଦେଇ କାମଦାମ କରୁଥାଏ । ତା' ବିବାହ ସମ୍ପର୍କରେ ଅନ୍ୟାନ୍ୟ ସ୍ଥାନରୁ କିଛି କିଛି ପ୍ରସ୍ତାବ ଆସିଲା । କିନ୍ତୁ ସେ ବିବାହ ହେବ ନାହିଁ ବୋଲି କହିଦେଲା । ବଡ଼ଭାଇ ତ ସହଜେ ଅଳସୁଆ; ସେ ବା ସେ ଦିଗରେ

ତତ୍ପର ହେବ କାହିଁକି? ଦିନ ଗଡ଼ି ଚାଲିଲା। ଜୟଦେବ ସେ ବିଷୟରେ କିଛି ଉଚ୍ଚବାଚ୍ୟ କରୁ ନଥାଏ।

ପରେ ପରେ ଦିନେ ଜୟଦେବ ଏକୁଟିଆ ବସିଥିବା ଅବସ୍ଥାରେ କୁମାରର ସ୍ତ୍ରୀ ଯାଇ ତାକୁ କହିଲା, "ଦେବର ଜୟଦେବ! ତମକୁ ଗୋଟିଏ କଥା ଖୋଲାଖୋଲି ଭାବରେ କହିବି?"

"ହଁ, ନୂଆବୋଉ, ନିଶ୍ଚୟ କହିବ!"

"କଥା କ'ଣ କି, ମୋ ସ୍ୱାମୀ ତ ସବୁବେଳେ ଚୁପ୍‌ଚାପ୍ ବସିଥାନ୍ତି। ତମେ ତାଙ୍କ ତୁଳନାରେ ଅତ୍ୟନ୍ତ ବୁଦ୍ଧିମାନ। ପୁଣି ତମେ ମୋ ଉପରେ ରାଗିଥିବା କଥା। ତେଣୁ ମୋ କପାଳ ମନ୍ଦ! ତେବେ, ତମ ସହିତ ଆମେ ଚଳିବୁଁ କପରି?" କୁମାରର ସ୍ତ୍ରୀ କହିଲା।

ଜୟଦେବ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ମୁଁ ତମ ଉପରେ ରାଗିବାର କାରଣ?"

"କାରଣ ହେଲା, ମୋ ସାନ ଭଉଣୀ ତମକୁ ବିଭା ହେବାକୁ ମନା କରିଦେଲା!"

"ସେ ବିଷୟରେ ମୁଁ ମୋଟେ ରାଗି ନାହିଁ। ଯଦି ରାଗିବି, ତେବେ ସିନା ମୋ କପାଳ ଉପରେ ରାଗିବି ନହେଲେ ସେ ଝିଅ ଉପରେ ରାଗିବି। ତମ ଉପରେ ରାଗିବାର କାରଣ କ'ଣ ହୋଇପାରେ? ତମେ ଭୁଲ ବୁଝିଛ। ତା'ଛଡ଼ା ବିବାହ ବିଷୟରେ ମୋର ଆଗ୍ରହ



ନାହିଁ। ମୁଁ ମନକଲେ ବା ଚେଷ୍ଟା କଲେ ତମ ଭଉଣୀଠୁଁ ଅଧିକ ସୁନ୍ଦରୀ ଝିଅ ବାହା ହୋଇ ପାରିବି ବୋଲି ମୋର ଧାରଣା। ସଂସାରରେ ସବୁ ଝିଅ ଖାଲି ବରର ସୌନ୍ଦର୍ଯ୍ୟକୁ ଅନାଇ ବସି ନଥାନ୍ତି।" ଜୟଦେବ କହିଲା।

ଜୟଦେବର ନୂଆବୋଉ ତା' କଥା ଉପରେ କୌଣସି ଗୁରୁତ୍ୱ ଦେବାଭଳି ମନେହେଲା ନାହିଁ। ସେ ଅନ୍ୟ କିଛି ଭାବୁଥାଏ।

ଜୟଦେବ ପଚାରିଲା, "ତମେ ବୋଧହୁଏ କିଛି ଗୁରୁତର କଥା କହିବାକୁ ଚାହୁଁଛ!"

"ହଁ, ମୋର ଗୋଟିଏ ବିଶେଷ ପ୍ରସ୍ତାବ ଅଛି।" ତା' ନୂଆବୋଉ କହିଲା।



ଜୟଦେବ ଗମ୍ଭୀର ଭାବରେ ପଚାରିଲା, "ଓଃ, ଆଚ୍ଛା, ତମେ ତେବେ କହୁଛ କ'ଣ ? ମୁଁ କ'ଣ କଲେ ଅସୁବିଧା ଲାଗିବ ନାହିଁ ?"

"ଆମେ ଭିନେ ହୋଇଯିବା ଚାଲ । ଅଲଗା ଅଲଗା ରହିଲେ ମୋତେ ଅସୁବିଧା ଲାଗିବ ନାହିଁ ।"

"ନିଶ୍ଚୟ, ନିଶ୍ଚୟ !" ଜୟଦେବ କହିଲା ।

"ଆଉ ଗୋଟାଏ କଥା । ତମ ଭାଇ ତ ଅଳସୁଆ ବୋଲି ଜାଣ । ସମ୍ପତ୍ତି ଅଧା ଅଧା ନକରି ତାଙ୍କୁ ଟିକିଏ ବେଶି ଦେଲେ ଭଲ ହେବ ।" କୁମାରର ସ୍ତ୍ରୀ କହିଲା ।

"ମୁଁ ବରଂ ପୁରା ସମ୍ପତ୍ତି ଦେଇ ଦେଉଛି ।" ଏହା କହି ଜୟଦେବ ସେଠାରୁ ଉଠି ପଡ଼ିଲା ଓ ତତ୍‌କ୍ଷଣାତ୍ ଘର ଛାଡ଼ି ଚାଲିଗଲା ।

ସେ ବଣ ଭିତର ଦେଇ ନିରୁଦ୍ଦେଶ ଭାବରେ ଚାଲିଥାଏ । ଭୀଷଣ ଭୋକ ଲାଗିଲା । ସେ ଗୋଟାଏ ଗଛ ଚଢ଼ି କିଛି ପାଚିଲା ଆମ୍ବ ତୋଳିଲା । ସେତିକିବେଳେ ଅଦୂରରେ ଦୁଇଜଣ ଲୋକ ପଡ଼ିଥିବାର ସେ ଦେଖିଲା । ଆମ୍ବତକ ତଳେ ଥୋଇ ସେ ଦୌଡ଼ି ଆସିଲା ।

"ଆରେ ଭାଇ, ତମେ ଆମକୁ ବଞ୍ଚାଅ । ଡାକୁଦଳ ଆମକୁ ବେଦମ ପିଟି ସବୁ ପଇସା-ପତ୍ର ଲୁଟି ନେଲେ । ଟିକିଏ ପାଣି ଆଣି ଦେଇ ପାରିବ ?" ଜୟଦେବ ଏଣେତେଣେ ବହୁତ ଦୌଡ଼ାଦୌଡ଼ି କରି ଶେଷକୁ ପାଣିର ସନ୍ଧାନ ପାଇଲା ଓ ଆଣିଦେଲା । ତା'ପରେ ସେ ତୋଳିଥିବା ଆମ୍ବତକ ଆଣି ଦେଲା । ସେ ଲୋକ ଦୁଇଜଣ ସବୁତକ ଆମ୍ବ ଖାଇଦେଲେ । ଆଖପାଖରେ ଆଉ ଫଳ ନଥିଲା । ଏକେତ ଜୟଦେବକୁ ଭୋକ ଲାଗୁଥିଲା, ପୁଣି ଦୌଡ଼ାଦୌଡ଼ି କରି ସେ ଆହୁରି ହାଲିଆ ହୋଇ ଯାଇଥାଏ । ସେକଥା ଅନ୍ୟ ଦୁଇଜଣ ବୁଝିପାରି ଲଜ୍ଜିତ ହେଲେ ।

ଜୟଦେବ ଜାଣିଲା, ସେ ଦୁଇଜଣରୁ ଜଣେ ହେଲେ ଜମିଦାର ଓ ଅନ୍ୟ ଜଣକ ତାଙ୍କ ଗୁମାସ୍ତା । ସେମାନଙ୍କ ପ୍ରଶ୍ନର ଉତ୍ତରରେ ଜୟଦେବ ତା' ନିଜ କଥା ନିଷ୍କପଟରେ କହିଗଲା ।

ଜମିଦାର ଓ ଗୁମାସ୍ତା ବୁଝିଲେ, ଜୟଦେବ ଅତ୍ୟନ୍ତ ଭଲ ମଣିଷ । "ମୋର ଜଣେ ଭଲ ସହକାରୀ ଦରକାର । ତମେ ମୋ ସିରସ୍ତାରେ କାମ କରିବ ଚାଲ ।" ଜମିଦାର କହିଲେ । ଜୟଦେବ ଖୁସି ହୋଇ ତାଙ୍କ ସହ ଗଲା । ଗୁମାସ୍ତାଙ୍କ ଘରେ ତା'ର ରହିବାର ବ୍ୟବସ୍ଥା ହେଲା । ସିରସ୍ତାରେ ସେ କାମ କଲା । କେଇମାସ ଭିତରେ ଜମିଦାରୀ କାମ ଖୁବ୍ ଶୃଙ୍ଖଳିତ ହୋଇଗଲା । ଜୟଦେବର ପରାମର୍ଶରେ ଜମିଦାର ବେପାରରେ ପୁଞ୍ଜି ଲଗାଇଲେ ଓ ବର୍ଷ ଶେଷକୁ ବହୁତ ଲାଭ କଲେ । ସେ ସେଥିରୁ ଅଧେ ଜୟଦେବକୁ ଦେଇ ଦେଲେ । ଜୟଦେବ ପାଇଁ ଘର ତୋଳା ହେଲା । ସେ ଧନୀ ବୋଲି ପରିଗଣିତ ହେଲା । ଜମିଦାର ତା' ଉପରେ ସବୁ କଥାରେ ନିର୍ଭରଶୀଳ ଥିଲେ ।

ଗୁମାସ୍ତାଙ୍କର ମନୋରମା ବୋଲି ଝିଅଟିଏ ଥାଏ । ସେ ଅତ୍ୟନ୍ତ ସୁନ୍ଦରୀ । ସେ ମନେ ମନେ ଜୟଦେବକୁ ବହୁତ ଭଲ ପାଉଥାଏ । କିନ୍ତୁ ତା' ସହ ବିବାହ ପ୍ରସ୍ତାବ କିପରି ପକାଇବ, ଏହା ବୁଝିପାରୁ ନଥାଏ । ତେଣେ ଜମିଦାରଙ୍କର ବି ସୁମତି ନାମରେ ଝିଅଟିଏ ଥାଏ । ସେ ଦେଖିବାକୁ ସୁନ୍ଦରୀ ନୁହେଁ । ସେ ବି ଜୟଦେବକୁ ବହୁତ ଭଲ ପାଉଥାଏ । ମନୋରମା ଓ ସୁମତି ଦୁହେଁ ପରସ୍ପର ପ୍ରତି ଖୁବ୍ ଅନୁରକ୍ତ ଥିଲେ ।



ମନୋରମା ନିଜ ମନକଥା ସୁମତିକୁ କହିବାକୁ ଠିକ୍ କଲା । ସୁମତି ବି ନିଜ ମନକଥା ମନୋରମାକୁ କହିବାକୁ ଠିକ୍ କଲା । ଦୁଇ ସଖୀ କଥାବାର୍ତ୍ତା କରି ଦେଖିଲେ ଦୁହେଁ ଜଣକୁ ପସନ୍ଦ କରୁଛନ୍ତି ! ଦୁହେଁ ସ୍ଥିର କଲେ, ଜୟଦେବ ଉପରେ ସିଦ୍ଧାନ୍ତ ଛାଡିଦେଲେ ଭଲ ହେବ । ସେ ଯାହାକୁ ଚାହିଁବ, ବିଭା ହେବ ।

ଜମିଦାର ଓ ଗୁମାସ୍ତା ଦୁଇକନ୍ୟାଙ୍କ ସିଦ୍ଧାନ୍ତ ଜାଣିଲେ ଓ ଖୁସି ହେଲେ । ଜଣେ ତୃତୀୟ ବ୍ୟକ୍ତି ଜରିଆରେ ସେ ଦୁହେଁ ଜୟଦେବକୁ ଏକଥା ଜଣାଇଲେ ।

ଜୟଦେବ ପ୍ରଥମେ ଆଶ୍ଚର୍ଯ୍ୟ ହେଲା । କାରଣ ମନୋରମା ଓ ସୁମତି ଉଭୟଙ୍କ ପ୍ରତି ତା'ର

ସଦ୍‌ଭାବ ଥିଲା, ତେବେ ତାହାକୁ ବାଧା ଦେବା ବିଷୟ ସେ ଭାବି ନଥିଲା । ସେ କିଛି ସମୟ ଚିନ୍ତା କରି ସୁମତିକୁ ବିଭା ହେବ ବୋଲି ନିଜ ସିଦ୍ଧାନ୍ତ ଜଣାଇଲା ।

ଜମିଦାର ଓ ଗୁମାସ୍ତା ଉଭୟେ କହିଲେ, "ଜୟଦେବ ବାସ୍ତବିକ ବିବେକୀ !"

ବେତାଳ ଟିକିଏ ଚୁପ୍ ରହି ତା'ପରେ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା ! ଜୟଦେବକୁ ତା' ନିଜ ସହରର ବଣିକର ଝିଅ ନାପସନ୍ଦ କଲାବେଳେ ସେ ମନେ ମନେ ଭାବିଥିବ, ସୁଯୋଗ ପାଇଲେ ଦିନେ ସେ ଆହୁରି ସୁନ୍ଦରୀ କନ୍ୟା ବିଭା ହେବ । ତେବେ ମନୋରମାକୁ ସେ ବିଭା ନ ହେଲା କାହିଁକି ? ଜମିଦାରଙ୍କ ଟଙ୍କା ପ୍ରତି ଲୋଭ ଯୋଗୁଁ ସେ ଏପରି କଲାଟି ? ପୁଣି ଜମିଦାର ଓ ଗୁମାସ୍ତା ତାଙ୍କୁ ବିବେକୀ ବୋଲି କହିବାର ହେତୁ କ'ଣ ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ : "ମନୋରମା ଅତ୍ୟନ୍ତ ସୁନ୍ଦରୀ । ତେଣୁ ତା' ପାଇଁ ବରର ଅଭାବ ହେବେ ନାହିଁ । କିନ୍ତୁ ଯିଏ ସୁମତିକୁ ବିଭା ହେବ, ସେ ହୁଏତ ଖାସ୍ ଟଙ୍କା ଲୋଭରେ ହେବ । ତାହା ସୁମତି ପ୍ରତି ହେବ ଅନ୍ୟାୟ । ଜୟଦେବର ନିଜର ଟଙ୍କା ପ୍ରତି ଲୋଭ ନଥିଲା । କିନ୍ତୁ ବିବେକ ବୋଧ ଥିଲା । ତେଣୁ ସେ ସୁମତିକୁ ବିଭା ହେବାକୁ ସ୍ଥିର କଲା । ଜମିଦାର ଓ ଗୁମାସ୍ତା ତା'ର ଚରିତ୍ର ଠିକ୍ ଭାବରେ ବୁଝିଥିଲେ ବୋଲି ତାକୁ ବିବେକୀ ବୋଲି କହିଲେ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନରାୟ ସେ ପ୍ରାଚୀନ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)







# ମୀର କମଲର ମେଣ୍ଢା

ମୀର କମଲ ଓ ତା' ସ୍ତ୍ରୀ ଜମୀରା ତାସ୍‌କେଣ୍ଟ ସହରରେ ରହୁଥାନ୍ତି । ସେମାନେ ଗରିବ ସତ, କିନ୍ତୁ ଯେତେ ଗରିବ ବୋଲି ମନେହୁଏ, ସେତେ ନୁହେଁ । ମୀର କମଲ ଆଖ ପାଖ ଗାଁ ଗଣ୍ଡାକୁ ଯାଇ କିଛି ପନିପରିବା ଆଣି ବିକ୍ରି କରେ ଓ ଦୁଇପଇସା ଉପାର୍ଜନ କରେ । ଜମୀରା ଦିନଯାକ ବୁଲି ବୁଲି ଲୋକଙ୍କଠୁଁ ସାହାଯ୍ୟ ଭିକ୍ଷା କରି କିଛି ଆଣେ । ଫଳରେ ମୀର କମଲ ଯାହା ଲାଭ ପାଏ, ସେତକ ଖର୍ଚ୍ଚ କରିବା ଦରକାର ହୁଏ ନାହିଁ । ଜମୀରା ଆଣିଥିବା ଭିକ୍ଷାରେହିଁ ମୋଟାମୋଟି ଚଳିଯାଏ ।

ଦିନେ ଗୋଟାଏ ପଡ଼ିଆ ଭିତରେ ମେଣ୍ଢାଟିଏ ବୁଲୁଥିବାର ମୀର କମଲ ଦେଖିଲା । ଆଖ-ପାଖରେ କେହି ନଥିଲେ । ମୀର କମଲ ମେଣ୍ଢାକୁ ନିଜ ଘରକୁ ନେଇ ଆସିଲା ।

ଆଠ ଦଶଦିନ ଭିତରେ ଘର ପାଖରେ ଥିବା ଘାସତକ ମେଣ୍ଢା ଚରି ଶେଷ କରିଦେଲା । ତେଣେ ସବୁବେଳେ ମେଁ ମେଁ ହେଉଥାଏ । ଜମୀରା ବିରକ୍ତ ହୋଇ କହିଲା, "ଏ ମେଣ୍ଢାକୁ କ'ଣ ପାଇଁ ପୋଷୁଛ ? ଏହାକୁ ବିଦାୟ କର, ନହେଲେ ମୁଁ ବିଦାୟ ନେବି ।"

"ଆରେ ବ୍ୟସ୍ତ ହୁଅ ନାହିଁ । ବ୍ୟବସ୍ଥା ମୁଁ କରୁଛି ।" ଏହା କହି ମୀର କମଲ ଯାଇ ଏଣେତେଣେ ବୁଲିବୁଲି କରି ଦେଖିଲା, ସହରର କବର ସ୍ଥାନରେ ଘାସ ଭର୍ତ୍ତି । ଶହେ ମେଣ୍ଢା ସବୁଦିନେ ଖାଇଲେ ବି ସରିବ ନାହିଁ । ସେ ଘରକୁ ଯାଇ ମେଣ୍ଢାକୁ ଧରି କବରସ୍ଥାନକୁ ଗଲା ଓ ଜଗୁଆଳିକୁ କହିଲା, "ଭାଇ, ମୁଁ ଗରିବ ଲୋକ । ମୋର କେହି ନାହିଁ । ମୁଁ ମଲେ ପଡ଼ୋଶୀ-ମାନେ ଆଣି ଏଇଠି ଥୋଇଦେଇ ଯିବେ । ତମେ ନିଜେ ମୋତେ କବର ଦେବ !"

"ମୋର କେଉଁ ଗରଜ ?"

ଜଗୁଆଳିର ଏଭଳି ବେଖାତିରିଆ ଉତ୍ତର ମୀର କମଲ ଆଶା କରିନଥିଲା । ସେ ଗୋଟାଏ ସଲାମ ପକାଇଲା ଓ ହସିଦେଇ ମେଣ୍ଢାଟିକୁ ଦେଖାଇ ଦେଲା ।

"ଏହାର ଅର୍ଥ କ'ଣ ? ତମେ କ'ଣ କହିବାକୁ ଚାହୁଁଛ ? ମେଣ୍ଢା ଧରି ଆସିବାର ଅର୍ଥ ?" ଜଗୁଆଳି ପଚାରିଲା ।

"ସେଥିପାଇଁ ଏ ମେଣ୍ଢାଟିକୁ ତମକୁ ଦେଉଛି ।"

ଜଗୁଆଳି ଏ ସର୍ତ୍ତରେ ରାଜି ହେଲା ଓ ମୀର କମଲ ମଲେ ସେ ତାକୁ କବର ଦେବ ବୋଲି ଶପଥ କଲା । ମେଣ୍ଢା ସେଇଠି ରହିଲା ।

ମାସକ ପରେ ସେ ବାଟଦେଇ ଗଲାବେଳେ ମୀର କମଲ ଦେଖିଲା, ମେଣ୍ଢାଟି ହୃଷ୍ଟପୁଷ୍ଟ ହୋଇ ଚମତ୍କାର ଦିଶୁଛି । ବହୁତ ଦାମ୍‌ରେ ବିକ୍ରି ହୋଇ ପାରିବ । ସେ ଯାଇ ଜଗୁଆଳିକୁ କହିଲା, "ଭାଇ ! ମୋ ସାଙ୍ଗରେ ଚାଲ । ମୋର ଭୁଲ ଔଷଧରେ ଗୋଟାଏ ରୋଗୀ ମଲା ବୋଲି ମୋତେ ଦେଶରୁ ବାହାରି ଯିବାକୁ ହୁକୁମ୍ ହୋଇଛି ।"

"ମୁଁ ଯିବ କାହିଁକି ?"

"ମୁଁ ମଲେ ତମେ ମୋ କବର ବ୍ୟବସ୍ଥା କରିବ ବୋଲି ଶପଥ କରି ନଥିଲ ? ତେଣୁ ମୁଁ ଯୁଆଡ଼େ ଗଲେ ତମେ ମୋ ସାଥିରେ ଯିବାକୁ ବାଧ୍ୟ । ମୁଁ ଯେବେ ମରିବ, ସେବେ ମୋତେ କବର ଦେବା ପରେ ତମର ଛୁଟି । ଖାଲିଟାରେ କ'ଣ ମେଣ୍ଢା ଦେଇଥିଲି ?" ମୀର କମଲ କହିଲା ।

"ନେଇ ଯା ତୋ ମେଣ୍ଢା ହତଭାଗା । ଯେଉଁଠି ଇଚ୍ଛା ଯାଇ ମର ।" ଏହା କହି ଜଗୁଆଳି ମେଣ୍ଢାଟିକୁ ଘୋଷାରି ଆଣି ମୀର କମଲ ଆଗରେ ଛାଡ଼ିଦେଲା ।

ମୀର କମଲ ତାକୁ ନେଇ ଆନନ୍ଦରେ ବଜାର ଆଡ଼େ ଚାଲିଲା ।





ଭାରତର ମନ୍ଦିର

# ଖଜୁରାହୋର ମନ୍ଦିରମାଳା

ହଜାର ହଜାର ବର୍ଷ ତଳେ ବିନ୍ଧ୍ୟ ପର୍ବତମାଳାର ପଶ୍ଚିମକୁ ଗୋଟିଏ ମନୋରମ ଉପତ୍ୟକା ଥିଲା । ଥରେ ଜହ୍ନରାତିରେ ଏକ ବ୍ରାହ୍ମଣକନ୍ୟା ସେ ଉପତ୍ୟକାସ୍ଥିତ ହ୍ରଦରେ ସ୍ନାନ କରୁଥିଲା । ସେ ଥିଲା ଏକାକିନୀ ।

ସେ ଉପତ୍ୟକାର ଶାନ୍ତି ଓ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଚନ୍ଦ୍ର ଦେବତା ସେଠାରେ ମଣିଷ ରୂପରେ ବିଚରଣ କରୁଥିଲେ । ସେ ପାହାଡ଼ରୁ ପାହାଡ଼କୁ ଡେଇଁ ଡେଇଁ ବୁଲୁଥିବା ବେଳେ ହ୍ରଦରେ ନିଜ ପ୍ରତିବିମ୍ବ ଦେଖିଲେ ।





ସଙ୍ଗେ ସଙ୍ଗେ ନିଜ ପ୍ରତିବିମ୍ବ ଭଳି ସୁନ୍ଦର ସେ ସ୍ନାନରତା କନ୍ୟା ଉପରେ ବି ତାଙ୍କ ଆଖି ପଡ଼ିଲା । ସେ ନିଜ ଆଖି ଫେରାଇ ନେଇ ପାରିଲେ ନାହିଁ । କ୍ରମେ କ୍ରମେ ସେ ହ୍ରଦର ପାଖକୁ ପାଖକୁ ଆସିଲେ ।




ଚନ୍ଦ୍ରଦେବତା ସେ କନ୍ୟାସଙ୍ଗେ ଗପସପ ହେଲେ । ରାତି ପରେ ରାତି ସେମାନଙ୍କର ସାକ୍ଷାତ ହେଲା । ଚନ୍ଦ୍ର-ଦେବତା କନ୍ୟାଟିକୁ ଭକ୍ତ ହେଲେ । ଗୋପନରେ । ବନ୍ଧନ ବଢିଗଲା ।

ମର୍ତ୍ତ୍ୟକୁ ଚନ୍ଦ୍ରଦେବତା କ୍ରମାଗତ ସବୁଦିନ ଆସିବା ସମ୍ଭବ ନଥିଲା । ସବୁଦିନ ମଣିଷ ରୂପ ଗ୍ରହଣ କରିବା ମଧ୍ୟ ତାଙ୍କ ପାଇଁ ଜଟିଳ ଥିଲା । ସେ କନ୍ୟାଠୁଁ ବିଦାୟ ନେଲେ । କନ୍ୟା ଗର୍ଭରୁ ଜାତ ପୁତ୍ର ଦିନେ ଏକ ରାଜବଂଶ ପ୍ରତିଷ୍ଠା କରିବ, ସେ ଏହି ଭବିଷ୍ୟତ୍‌ବାଣୀ କରିଗଲେ ।





ଯଥା ସମୟରେ ସେ କନ୍ୟାଠୁଁ ସୁନ୍ଦର ପୁଅଟିଏ ଜନ୍ମ ହେଲା । ଅଳ୍ପ ବୟସରୁ ପୁଅ ତୀକ୍ଷ୍ଣ ବୁଦ୍ଧି ଓ ସାହସର ପରିଚୟ ଦେଲା । ମା'ଙ୍କ ତତ୍ତ୍ୱାବଧାନରେ ସେ ଯୁବା ହୋଇ ସେ ମୁଲକ ଉପରେ ନେତା ହେଲେ ।

କିଛି ବର୍ଷ ପରେ ସେ ନିଜକୁ ରାଜା ବୋଲି ଘୋଷଣା କଲେ । ସେ ରାଜବଂଶର ନାମ ହେଲା ଚନ୍ଦେଲ— କାରଣ ଚନ୍ଦ୍ରଠୁଁ ତାହାର ଉତ୍ପତ୍ତି । କ୍ରମେ ସେ ବଂଶ ବିଖ୍ୟାତ ହେଲା । ଲୋକେ ସେ ରାଜବଂଶକୁ ବହୁତ ଶ୍ରଦ୍ଧା କଲେ ।






ଗୋଟିଏ ଖଜୁରୀ ଗଛତଳେ ପ୍ରଥମେ ଚନ୍ଦ୍ରଦେବତା ଓ ସେ ବ୍ରାହ୍ମଣ କନ୍ୟାଙ୍କ ଭେଟ ହୋଇଥିଲା ବୋଲି ରାଜା ନିଜ ପ୍ରତିଷ୍ଠିତ ରାଜଧାନୀର ପ୍ରବେଶ ପଥରେ ଦୁଇଟି ଖଜୁରୀ ଗଛ ରୋପଣ କଲେ ଓ ସହରର ନାମ ଦେଲେ ଖଜୁରାହୋ ।

ପୂର୍ବ କାଳରେ ଖଜୁରାହୋ ସମୃଦ୍ଧ ସହର ଥିଲା । ପୃଥିବୀର ଅନେକ ଅଞ୍ଚଳରୁ ବଣିକମାନେ ଏ ସହରକୁ ଆସୁଥାନ୍ତି । ଭିନ୍ନ ଭିନ୍ନ ରାଜା ଏଠାରେ ବିବିଧ ମନ୍ଦିର ତୋଳିଲେ । ସେସବୁ ଭିତରୁ ଏଯାଏ ପଚାଶଟି ମନ୍ଦିର ବିଦ୍ୟମାନ ରହିଛି ।





ଦଶମ ଓ ଏକାଦଶ ଶତାବ୍ଦୀରେ ଚନ୍ଦେଲ ରାଜାମାନେ ବିଶେଷ ପ୍ରଭାବଶାଳୀ ଥିଲେ । ସେତେବେଳେ ବହୁତ ଗୁଡ଼ିଏ ମନ୍ଦିର ନିର୍ମିତ ହୋଇଥିଲା । ଚନ୍ଦେଲ ବଂଶର ପ୍ରତୀକ ଥିଲା ଏକ ପ୍ରକାର ସିଂହ ମୂର୍ତ୍ତି ।

କାଣ୍ଡାରୀୟ ମହାଦେବ ମନ୍ଦିର ଖଜୁରାହୋର ସବୁଠାରୁ ବିଖ୍ୟାତ ମନ୍ଦିର । ୩୧ ମିଟର ଉଚ୍ଚ ଏହି ମନ୍ଦିରର ଭାସ୍କର୍ଯ୍ୟ ଅପୂର୍ବ । ଜୀବନର ବହୁ ଦିଗକୁ ଉଜ୍ଜ୍ୱଳ ଭାବରେ ଏଥିରେ ପରିସ୍ଫୁଟ କରାଯାଇଛି ।





ମନ୍ଦିରକୁ ପୃଷ୍ଠଭୂମିରେ ରଖି ପ୍ରତିବର୍ଷ ଏଠାରେ ଏକ ନୃତ୍ୟ ସମାରୋହ ହୁଏ । ଏ ପ୍ରାଚୀନ ପୌରାଣିକ ଓ ଐତିହାସିକ ସ୍ଥାନ ପୁନର୍ବାର ଆନନ୍ଦ-ମୁଖରିତ ହୁଏ ।



# ବ୍ରତ ଓ ବିଶ୍ୱାସ

ମହେନ୍ଦ୍ରର ବାପା ମା ନଥିଲେ । ସଂସାରରେ ନିଜର ବୋଲି କୁକୁରଟିଏ ଥିଲା ଯେ କିନ୍ତୁ ବନ୍ୟାରେ ଯେତେବେଳେ ତା' ଘର ଭାଙ୍ଗିଗଲା, ସେତେବେଳେ ସେ କୁକୁରଟି କୁଆଡ଼େ ଗଲା କେଜାଣି, ମହେନ୍ଦ୍ର ତାକୁ ଆଉ ଖୋଜି ପାଇଲା ନାହିଁ ।

ବେକାର ମହେନ୍ଦ୍ର ଘର ଛାଡ଼ି ସହର ଅଭିମୁଖେ ଚାଲିଲା । ସହର ବହୁତ ଦୂର । ବାଟରେ ସନ୍ଧ୍ୟା ହୋଇଗଲା । ତା' ଆଖିରେ ଗୋଟିଏ ମନ୍ଦିର ପଡ଼ିଲା । ମନ୍ଦିର ଭିତରେ ବା ଆଖପାଖରେ କେହି ନଥାନ୍ତି । ସେ ମନ୍ଦିର କଥା ସେ ପୂର୍ବରୁ ଶୁଣିଥିଲା । ତାହା ଜଣେ ଜମିଦାରଙ୍କର ଥିଲା । ସେ ଜମିଦାର ଦୁଆ ନିଆଁ ହୋଇଗଲେ ଓ ଥରେ ସେ ଗାଁରେ ବସନ୍ତ ଲାଗିବାରୁ ପୁରୋହିତ ବଂଶର ଅଧିକାଂଶ ଲୋକ ମରିଗଲେ । ମନ୍ଦିରରେ ପୂଜା ବନ୍ଦ ହୋଇଗଲା । ତା'ପରେ କୋଡ଼ିଏ ବର୍ଷ ବିତି ଗଲାଣି ।

ମହେନ୍ଦ୍ର ରାତିରେ ସେଇଠି ରହିଲା । ସକାଳେ ତାକୁ ଆଉ କୁଆଡ଼େ ଯିବାକୁ ଇଚ୍ଛା ହେଲା ନାହିଁ । ପାଖରେ ନଡ଼ିଆ ଗଛରୁ ନଡ଼ିଆ ଝଡ଼ୁଥାଏ । ଆମ୍ବ ଗଛରେ ଭଲ ଆମ୍ବ ଫଳୁଥାଏ । ସେ ଖିଆପିଆ କରି ମନ୍ଦିର ପ୍ରାଙ୍ଗଣ ପରିଷ୍କାର ପରିଚ୍ଛନ୍ନ କରି ମୂର୍ତ୍ତି ଉପରେ ପାଣି ଢ଼ାଳି, ସଫା ସୁତୁରା କରି ସେଇଠି ରହିଲା ।

ସେଦିନ ଓପରଓଳି ଜଣେ ବଣିକ ସହରକୁ ଯାଉଁ ଯାଉଁ ସେ ମନ୍ଦିର ପାଖରେ ଡେରା ପକାଇଲେ । ସେ ମହେନ୍ଦ୍ରକୁ କହିଲେ, "ତମେ ଏ ମନ୍ଦିରର ପୂଜାରି ପରା ! ଠାକୁରଙ୍କୁ ମୋ ପାଇଁ ଟିକିଏ କହି ରଖିବ । ଯେଉଁ ବ୍ୟବସାୟରେ ଯାଉଛି, ତାହା ଯଦି ସଫଳ



ହୁଏ, ତେବେ ମୁଁ ଫେରିବା ବେଳକୁ ଏ ମନ୍ଦିର ମରାମତି ପାଇଁ ବ୍ୟବସ୍ଥା କରିଦେଇ ଯିବି।" ଏହା କହି ସେ ମହେନ୍ଦ୍ରକୁ କିଛି ଟଙ୍କା ଦେଇ ଚାଲିଗଲେ।

ମହେନ୍ଦ୍ର ତାଙ୍କ ପଛେ ପଛେ ଯାଇ କହିଲା, "ମହାଶୟ! ଠାକୁରଙ୍କୁ ପ୍ରାର୍ଥନା କରିବାର ଅଭ୍ୟାସ ମୋର ନାହିଁ। ପୁଣି ମୁଁ ପ୍ରାର୍ଥନା କଲେ ଠାକୁର ଶୁଣିବେ କି ନା ସେକଥା ମଧ୍ୟ ମୁଁ ଜାଣେ ନାହିଁ। ଏଭଳି କ୍ଷେତ୍ରରେ ଆପଣଙ୍କଠୁଁ ଟଙ୍କା ରଖିବା କ'ଣ ଠିକ୍ ହେବ?"

ବଣିକ ଆଶ୍ଚର୍ଯ୍ୟ ହୋଇ ମହେନ୍ଦ୍ରକୁ ନିରୀକ୍ଷଣ କଲେ ଓ କହିଲେ, "ବାବୁ! ତମ ଭଳି ନିର୍ଲୋଭୀ ଜଣେ ମହାତ୍ମା ପଦବାଚ୍ୟ ଲୋକ। ଅତଏବ ତମ ପ୍ରାର୍ଥନା ଠାକୁର ନ ଶୁଣିବେ କିପରି? ତମେ ଟଙ୍କା ରଖ। ଠାକୁରଙ୍କୁ ଜଣାଇବ କି ନାହିଁ, ସେ କଥା ତମ ଉପରେ ମୁଁ ଛାଡିଦେଲି।"

ଏହା କହି ବଣିକ ଆଉ କିଛି ନ ଶୁଣି ଚାଲିଗଲେ। ମହେନ୍ଦ୍ରର ତ ଟଙ୍କା ବହୁତ ଦରକାର ଥିଲା। ସେ ମନେ ମନେ ବହୁତ ସନ୍ତୋଷ ଲାଭ କଲା।

ମହେନ୍ଦ୍ର ସେହି ମନ୍ଦିରରେହିଁ ରହିଗଲା। ଗାଁକୁ ଯାଇ ଗାଁ ଦୋକାନରୁ ଓ କାହା କାହା ଘରୁ କିଛି ଜିନିଷପତ୍ର ଓ ରୋଷେଇ ସରଞ୍ଜାମ ସଂଗ୍ରହ କରି ଆଣିଲା। ସେ କିଛି ପାଠ ପଢ଼ିଥିଲା। ତେଣୁ ଗାଁ ଲୋକେ ତା' ପାଖରୁ ଚିଠିପତ୍ର ଲେଖାଇ ବା ପଢ଼ାଇ ନିଅନ୍ତି। ତାକୁ ଚାଉଳ ବା ଫଳମୂଳ ଦିଅନ୍ତି।

ପନ୍ଦରଦିନ ପରେ ସେ ବ୍ୟବସାୟୀ ସେହି ବାଟରେ ଫେରିଲେ। ତାଙ୍କ ମୁହଁ ଅତ୍ୟନ୍ତ ଉଜ୍ଜ୍ୱଳ ଦିଶୁଥିଲା। କାରଣ, ସେ ଯେଉଁ ବ୍ୟବସାୟ ପ୍ରସ୍ତାବ ଧରି ସହରକୁ ଯାଇଥିଲେ, ତାହା ସଫଳ ହୋଇଥିଲା। ସେ ମନ୍ଦିର ମରାମତିର ବ୍ୟବସ୍ଥା କରିଦେଲେ। ଚାରିଆଡ଼େ ପ୍ରଚାର ହୋଇଗଲା ଯେ ସେ ମନ୍ଦିରରେ ଥିବା ଦେଅଙ୍କ ଦୟାରୁ ତାଙ୍କର ଏଭଳି ସାଫଲ୍ୟ ଲାଭ ହେଲା।

ଫଳରେ କ୍ରମେ ମନ୍ଦିରକୁ ଅଧିକ ଭକ୍ତ ଆସିଲେ, ମହେନ୍ଦ୍ର ଆନନ୍ଦରେ ରହିଲା ଓ

ଆଶ୍ରମରେ ଚାଲିଲା । ମନ୍ଦିର ପାଖରେ ଖଣ୍ଡିଏ ଘର ବି ତୋଳିଲା ।

କିନ୍ତୁ ଲୋକେ ଲକ୍ଷ୍ୟ କଲେ, ମହେନ୍ଦ୍ର କୌଣସି ଆଚାର ବିଧି ମାନୁ ନାହିଁ । ପର୍ବ ପର୍ବାଣିରେ ଉପବାସ କରୁନାହିଁ । ଦିଅଁଙ୍କ ମୁଣ୍ଡରେ ଫୁଲ ଚଢ଼ାଇବା ବେଳେ ମନ୍ତ୍ର ପଢୁନାହିଁ । ଗାଁ ଲୋକେ ଯାଇ ଅଦୂରରେ ଥିବା ରାଜ-ପ୍ରତିନିଧିଙ୍କୁ ଏକଥା କହିଲେ । ସେମାନେ କହିଲେ, "ଏହା ଦ୍ୱାରା ଅନାଚାର ହେଉଛି । ଦିଅଁ ରାଗିଯିବେ ।"

ରାଜ-ପ୍ରତିନିଧି ନିଜେ କିଛି ନକରି ଅପେକ୍ଷା କଲେ । ସାତଦିନ ପରେ ନିଜେ ରାଜା ଗସ୍ତରେ ଆସିବାର ଥିଲା । ରାଜା ଆସିବାରୁ ସେ ତାଙ୍କୁ ଲୋକଙ୍କ ଅଭିଯୋଗ କଥା ଜଣାଇଲେ । ରାଜା ମହେନ୍ଦ୍ରଙ୍କୁ ଡକାଇଲେ ଓ କହିଲେ, "ତମେ ଠାକୁର ପୂଜା କରୁଛ ଅଥଚ ନିଜେ ବିଧିବିଧାନ ମାନୁ ନାହଁ, ଏହା ଅନ୍ୟାୟ । ତମେ ଦଣ୍ଡ ପାଇବା ଉଚିତ ।"

"ମହାରାଜ! ଆପଣଙ୍କ ରାଜ୍ୟର ବିଖ୍ୟାତ ବଡ଼-ବ୍ୟବସାୟୀ ରଘୁନାଥଙ୍କୁ ଯେପରି ଦଣ୍ଡ ଦେବେ, ମୋତେ ସେହିପରି ଦଣ୍ଡ ଦିଅନ୍ତୁ ।" ମହେନ୍ଦ୍ର କହିଲା ।

"ରଘୁନାଥଙ୍କୁ କାହିଁକି ଦଣ୍ଡ ଦେବ?" ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ମହାରାଜ! ରଘୁନାଥ ବଡ଼ ପ୍ରସ୍ତୁତ କରି ବିକ୍ରି କରନ୍ତି, କିନ୍ତୁ ନିଜେ ବଡ଼ ପିଅନ୍ତି ନାହିଁ । ସେହିପରି ମୁଁ ଅନ୍ୟମାନଙ୍କ ମନରେ



ଦିଅଁଙ୍କ ପ୍ରତି ଆକର୍ଷଣ ଅଣାଇ ଦେଇଛି, ଅନ୍ୟମାନେ ଯେପରି ବିଧିବିଧାନ ମାନିବେ, ସେ ବ୍ୟବସ୍ଥା କରି ଦେଇଛି. କିନ୍ତୁ ନିଜେ ବିଧିବିଧାନ ମାନେ ନାହିଁ ।" ମହେନ୍ଦ୍ର କହିଲା !

ରାଜା ତା' ଯୁକ୍ତିରେ ଖୁସି ହେଲେ ଓ କହିଲେ, "ବାସ୍ତବିକ୍. ଲୋକେ ଭୁଲ୍ କରୁଛନ୍ତି । ସେମାନେ ମନ୍ଦିରକୁ ତ୍ୟାଗ କରିଥିଲେ, ଦିଅଁଙ୍କୁ ପୂଜା କରୁ ନଥିଲେ । ସେଥିରେ ଦିଅଁ ରାଗି ପାରନ୍ତି, ସେକଥା ସେମାନଙ୍କ ମନକୁ ଆସିଲା ନାହିଁ । ଅଥଚ ଯିଏ ମନ୍ଦିରର ପୁନରୁଦ୍ଧାର ପାଇଁ ଦାୟୀ, ତା'ର ତ୍ରୁଟି ଯୋଗୁଁ ଲୋକେ ବ୍ୟସ୍ତ !"

ରାଜା ଏହା ପରେ ଲୋକଙ୍କୁ କହିଲେ, "ତମେମାନେ ତମ ଭକ୍ତି ଓ ବିଶ୍ୱାସ ଅନୁସାରେ ଯେପରି ବ୍ରତ ଉତ୍ସବ କରିବା କଥା, କର । ମହେନ୍ଦ୍ର ଯଦି ନିଜେ ସେସବୁ ନ କରୁଛି. ତେବେ ସେ ସେଥିପାଇଁ ଭଗବାନଙ୍କ ପାଖରେ କୈଫିୟତ୍ ଦେବ । ତମେମାନେ ସେଥିପାଇଁ ମୁଣ୍ଡ ବୁଲାଇବାର ପ୍ରୟୋଜନ ନାହିଁ ।"

କିନ୍ତୁ ଏହାପରେ ରାଜା ପୁଣି ମହେନ୍ଦ୍ରକୁ ଗୋପନରେ କହିଲେ, "ମହେନ୍ଦ୍ର ! ତମ ଯୁକ୍ତି ଠିକ୍, କିନ୍ତୁ ପ୍ରତ୍ୟେକ ଅନୁଷ୍ଠାନର ନିଜ ନିୟମ ଅଛି । ଯିଏ ଦିଅଁଙ୍କ ପୁରୋହିତ ହେବ, ତାକୁ କେତେଗୁଡିଏ ନିୟମ ମଧ୍ୟ ମାନିବାକୁ ପଡ଼ିବ । ତାହା ନହେଲେ ସାମାଜିକ ଜୀବନରେ ଶୃଙ୍ଖଳା ରହିବ ନାହିଁ । ତମେ ହୁଏତ ପୂଜା ବ୍ରତର ଯଥାବିଧି ନିୟମ ମାନିବ, ନହେଲେ ସେସବୁ ଛାଡ଼ିଦେବ । ତମେ ଯଦି ପେଟ ପୋଷିବା ପାଇଁ ମନ୍ଦିର ଜଗିଛ, ଭକ୍ତି ପାଇଁ ନୁହେଁ, ତେବେ ବରଂ ରାଜଧାନୀକୁ ଯାଅ । ମୁଁ ଚାକିରି ଦେବି ।"

ମହେନ୍ଦ୍ର ରାଜାଙ୍କ କଥାରେ ରାଜି ହେଲା । ମନ୍ଦିର ଦାୟିତ୍ୱ ଜଣେ ଦକ୍ଷ ପୁରୋହିତଙ୍କୁ ଦେଇ ସେ ଦରବାରରେ ଚାକିରି ନେଲା ।





# ଉତ୍ତର ରାମାୟଣ

ଶ୍ରୀରାମଚନ୍ଦ୍ର ରାକ୍ଷସମାନଙ୍କୁ ସଂହାର କରିବା ପରେ ବିଭୀଷଣଙ୍କୁ ରାଜ୍ୟ ଦାନ କରି ଅଯୋଧା ଫେରି ଆସିଲେ ।

ଦିନେ ଅଗସ୍ତି ତଥା ଅନ୍ୟ କେତେକ ମୁନି ରାମଙ୍କ ସହିତ ଦେଖା କରିବାକୁ ଆସିଥା'ନ୍ତି । ରାମ ସେମାନଙ୍କୁ ଉପଯୁକ୍ତ ସତ୍କାର କରି, ଆସନରେ ବସାଇ କୁଶଳ ପ୍ରଶ୍ନ ପଚାରିଲେ ।

ମୁନିଗଣ ରାଜା ରୂପରେ ରାମଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ଓ ରାମଙ୍କର ଭୂରି ଭୂରି ପ୍ରଶଂସା କଲେ । ବାର୍ତ୍ତାଳାପ କରୁ କରୁ ମୁନିମାନେ କହିଲେ ରାମଙ୍କ ଦ୍ୱାରା ରାବଣର ବଧ ଅପେକ୍ଷା ଲକ୍ଷ୍ମଣଙ୍କ ଦ୍ୱାରା ମେଘନାଦର ବଧ ଅଧିକ ଆଶ୍ଚର୍ଯ୍ୟଜନକ ଅଟେ । ରାମ ଅବଶ୍ୟ ଟିକିଏ ଆଶ୍ଚର୍ଯ୍ୟ ହେଲେ । ତେବେ ସେ ମେଘନାଦର ପରାକ୍ରମ ବିଷୟରେ ଜାଣିବାକୁ ଅଧିକ ଇଚ୍ଛା ପ୍ରକାଶ କଲେ ।

ରାମଙ୍କର ଆଗ୍ରହ ଦେଖି ମୁନିଶ୍ରେଷ୍ଠ ଅଗସ୍ତି ଋଷି ପୁଲସ୍ତ୍ୟଙ୍କର ବଂଶ ବିଷୟରେ ସମଗ୍ର ବୃତ୍ତାନ୍ତ ଶୁଣାଇଲେ ।

ସେ କହିଲେ—ସୃଷ୍ଟିର ପ୍ରାକ୍ କାଳରେ ଭଗବାନ୍ ବ୍ରହ୍ମା କେତେକ ମାନସ ପୁତ୍ର ସୃଷ୍ଟି କଲେ, ପୁଲସ୍ତ୍ୟ ତନ୍ମଧ୍ୟରେ ଅନ୍ୟତମ । ସେ କିନ୍ତୁ କିଛୁଦିନ ତପସ୍ୟା କରିବା ପାଇଁ ମେରୁପର୍ବତକୁ ଚାଲିଗଲେ । ସେଠାରେ ସେ ଗୋଟିଏ ଆଶ୍ରମ ବନାଇ ତପସ୍ୟା କରିବାକୁ ଲାଗିଲେ । ସେଠାକୁ ଋଷିମୁନି, ଗନ୍ଧର୍ବ, ନାଗ, ଇତ୍ୟାଦିଙ୍କ ସୁନ୍ଦରୀ କନ୍ୟାମାନେ ବନବିହାର କରିବାକୁ ଆସି ନାଚଗାନ କରନ୍ତି; ତେଣୁ

୧. ପୁଲସ୍ତ୍ୟ-ବଂଶ ବର୍ଣ୍ଣନ



ତାଙ୍କର ତପସ୍ୟାରେ ବିଘ୍ନ ହୁଏ । ତେଣୁ ସେ କ୍ରୁଦ୍ଧ ହୋଇ କହିଲେ, "ଯିଏ ଏଠାକୁ ଆସି ମୋ ସାମନାରେ ଗୀତ ନାଚ କରିବ ସେ ଗର୍ଭବତୀ ହୋଇଯିବ ।"

ଏପରି ଅଭିଶାପ ଶୁଣି କନ୍ୟାମାନେ ଭୟଭୀତ ହୋଇ ଆଉ ତାଙ୍କ ଆଶ୍ରମ ନିକଟକୁ ଆସିଲେ ନାହିଁ । ତୃଣବିନ୍ଦୁଙ୍କ କନ୍ୟାଙ୍କୁ କିନ୍ତୁ ଏକଥା ଆଦୌ ଜଣା ନଥିଲା । ତେଣେ ସେ ତା'ଙ୍କର ସଖୀଗଣଙ୍କୁ ଖୋଜୁ ଖୋଜୁ ସେ ଯାଇ ସେହି ନିଷେଧ ଭୂମିରେ ପହଞ୍ଚିଲେ ଯେଉଁଠାରେ ପୁଲସ୍ତ୍ୟ ବେଦପାଠ ଓ ଯଜ୍ଞ କରୁଥିଲେ । ପୁଲସ୍ତ୍ୟଙ୍କୁ ଦେଖିବା ମାତ୍ରେ ତାଙ୍କର ଗର୍ଭସଞ୍ଚାର ହେଲା ଓ ତାଙ୍କ ଦେହର ରଙ୍ଗ ଶୋଭା ବଢିଲା ।

ତୃଣବିନ୍ଦୁଙ୍କ କନ୍ୟା ନିଜ ଦେହରେ ଏପରି ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟ ହେଲେ ଓ ତତ୍‌କ୍ଷଣାତ୍ ଯାଇ ପିତାଙ୍କୁ କହିଲେ, "ପିତା, ଦେଖନ୍ତୁ ମୋର ଶରୀରରେ କିପରି ପରିବର୍ତ୍ତନ ଦେଖା ଦେଇଛି । ମୁଁ ମୋର ସଖୀମାନଙ୍କୁ ଖୋଜି ଖୋଜି ପୁଲସ୍ତ୍ୟଙ୍କ ଆଶ୍ରମକୁ ଯାଇଥିଲି । ସେଠାରେ ମୋ ଭିତରେ ହଠାତ୍ ଏପରି ପରିବର୍ତ୍ତନ ଅନୁଭୂତ ହେଲା । ମୁଁ ଏହାର କାରଣ କ'ଣ ଜାଣି ପାରୁନାହିଁ । ଅଧିକନ୍ତୁ ମୋତେ ବହୁତ ଭୟ ଲାଗୁଛି ।"

ତୃଣବିନ୍ଦୁ ସାଙ୍ଗେ ସାଙ୍ଗେ ବୁଝିଗଲେ ଯେ ପୁଲସ୍ତ୍ୟଙ୍କ ଅଭିଶାପ ଯୋଗୁ ତାଙ୍କ କନ୍ୟାର ଗର୍ଭସଞ୍ଚାର ହୋଇଛି । ସେ ନିଜର କନ୍ୟାକୁ ନେଇ ପୁଲସ୍ତ୍ୟଙ୍କ ପାଖରେ ପହଞ୍ଚିଲେ ଓ ବିନମ୍ର ସ୍ୱରରେ କହିଲେ, "ତପସ୍ୱୀ, ଇଏ ମୋର କନ୍ୟା, ଆପଣଙ୍କୁ ଖୋଜି ଏଠାରେ ଆସି ପହଞ୍ଚିଛି । ଏବେ ତାକୁ ପତ୍ନୀ ରୂପରେ ଗ୍ରହଣ କରନ୍ତୁ । ସେ ଆପଣଙ୍କର ସେବା କରି ଏଇଠାରେ ରହିବ ।"

ପୁଲସ୍ତ୍ୟ ତୃଣବିନ୍ଦୁଙ୍କ କଥାକୁ ସ୍ୱୀକାର କଲେ ! ସେ ଦେଖିଲେ ତାଙ୍କର ପତ୍ନୀ ସୁନ୍ଦରୀ ଓ ଗୁଣବତୀ । ସେ ଅତ୍ୟନ୍ତ ଆନନ୍ଦିତ ହୋଇ ତାଙ୍କୁ କହିଲେ, "ତମେ ଜଣେ ଧର୍ମପରାୟଣା ଓ ଗୁଣବତୀ ନାରୀ । ତୁମର ଗର୍ଭଜାତ ସନ୍ତାନ ଠିକ୍ ମୋରି ପରି ଜ୍ଞାନବାନ୍ ହେବ । ମୋର ବେଦ ଅଧ୍ୟୟନ ସମୟରେ

ତୁମେ ଏଠାରୁ ଆସି ଗର୍ଭବତୀ ହୋଇଛ । ତୁମ ପୁତ୍ର ସଂସାରରେ ବିଶ୍ରବସୁ ନାମରେ ବିଖ୍ୟାତ ହେବ । ମୋ ନାମ ଅନୁସାରେ ସମସ୍ତେ ତାକୁ ପୌଲସ୍ତ୍ୟ ବୋଲି ଡାକିବେ ।"

କିଛିଦିନ ପରେ ପିଲାଟି ଜନ୍ମ ହେଲା । ଏହି ବାଳକ ମଧ୍ୟରେ ସତ୍ୟ, ଶୀଳ, ଶୁଚିତା ଓ ଶାନ୍ତଗୁଣ ଜନ୍ମରୁହିଁ ଥିଲା । ତା'ର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଗୁଣ ମଧ୍ୟ ବଢ଼ିଲା । ବିଶ୍ରବସୁଙ୍କର ପ୍ରଶଂସା ଶୁଣି ଭରଦ୍ୱାଜ ମୁନି ନିଜର କନ୍ୟା ଦେବର୍ପଣୀକୁ ତାଙ୍କ ସହିତ ବିବାହ ଦେଲେ ।

ବିଶ୍ରବସୁ ଗୃହସ୍ଥାଶ୍ରମ କଲେ । କିଛିଦିନ ପରେ ତାଙ୍କର ପୁଅଟିଏ ହେଲା । ସେ ଜନ୍ମହେବା ମାତ୍ରେ ବ୍ରହ୍ମା ନିଜେ ସେଠାକୁ ଆସି ତାକୁ ଧନର ଅଧିପତି ହେବାର ଆଶୀର୍ବାଦ କଲେ ଏବଂ ତା'ର ନାମ ଦେଲେ ବୈଶ୍ରବଣ ।

ପିଲାଦିନରୁହିଁ ବୈଶ୍ରବଣ ତପସ୍ୟା ଦିଗରେ ମନ ଦେଲେ । ଗୋଟିଏ ଜଙ୍ଗଲ ମଧ୍ୟରେ ଥିବା ଏକ ନିଭୃତ ସ୍ଥାନକୁ ଯାଇ କେବଳ ଜଳ ଓ ବାୟୁ ଆହାର କରି ବ୍ରହ୍ମାଙ୍କୁ ଲକ୍ଷ୍ୟ ରଖି ସେ ତିନିହଜାର ବର୍ଷ ଧରି ଘୋର ତପସ୍ୟା କଲେ । ତାଙ୍କ ତପସ୍ୟାରେ ତୁଷ୍ଟ ହୋଇ ବ୍ରହ୍ମା ତାଙ୍କ ସମ୍ମୁଖରେ ଆବିର୍ଭାବ ହୋଇ ତାଙ୍କୁ ବର ଯାଚିଲେ । ବୈଶ୍ରବଣ କହିଲେ, "ପିତାମହ, ଜଗତ ଉପରେ ଶାସନ ଅଧିକାର ଓ ସମସ୍ତ ଧନସମ୍ପଦ ଉପରେ ଆଧିପତ୍ୟ ମୋର ଯେପରି ରହେ, ତାହାହିଁ ମୋର ଇଚ୍ଛା ।"



ବ୍ରହ୍ମା କହିଲେ, "ମୁଁ ସୃଜିଥିଲି ଇନ୍ଦ୍ର, ବରୁଣ ଓ ଯମଙ୍କ ବ୍ୟତୀତ ଏକ ଚତୁର୍ଥ ଲୋକପାଳଙ୍କୁ ସୃଷ୍ଟି କରିବାକୁ । ତମେ ଚତୁର୍ଥ ଲୋକପାଳ ହୋଇ ସମସ୍ତ ଧନସମ୍ପଦର ଅଧିପତି ହୁଅ । ସୂର୍ଯ୍ୟଙ୍କ କିରଣରେ ଜ୍ୟୋତି-ର୍ମୟ ଏହି ପୁଷ୍ପକ ବିମାନକୁ ଗ୍ରହଣ କର । ତୁମେ ଏହା ଦ୍ୱାରା ସର୍ବତ୍ର ଭ୍ରମଣ କରିପାରିବ । ଆଜିଠାରୁ ତୁମେ ଦେବତାମାନଙ୍କ ମଧ୍ୟରେ ଜଣେ ହୋଇ ରହିବ ।" ଏହି ବରଦାନ ଦେଇ ବ୍ରହ୍ମା ଅନ୍ତର୍ହିତ ହେଲେ ।

ବ୍ରହ୍ମାଙ୍କଠାରୁ ବର ପାଇବା ପରେ ବୈଶ୍ରବଣ ପିତା ବିଶ୍ରବସୁଙ୍କ ଆଶ୍ରମରେ ପହଞ୍ଚି କହିଲେ, "ପିତା, ବ୍ରହ୍ମା ତ ମୋତେ ବରଦାନ ଦେଇ ଚାଲିଗଲେ । କିନ୍ତୁ ମୋର ନିବାସସ୍ଥାନ କେଉଁଠି ହେବ ସେ ବିଷୟରେ ତ କିଛି କହିଲେ ନାହିଁ । ଆପଣ ମୋତେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ବିଷୟରେ କୁହନ୍ତୁ କେଉଁଠି ଅନ୍ୟକୁ କଷ୍ଟ ନ ଦେଇ ମୁଁ ସୁଖପୂର୍ବକ ଅବସ୍ଥାନ କରିପାରିବି ।"

ନିଜର ପ୍ରିୟ ପୁତ୍ରର ତପସ୍ୟା ସଫଳ ହୋଇଛି ଦେଖି ବିଶ୍ରବସୁ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ କହିଲେ, "ପୁତ୍ର, ଦକ୍ଷିଣ ସମୁଦ୍ର ତଟରେ ତ୍ରିକୂଟ ନାମକ ଏକ ପର୍ବତ ଅଛି । ତାହାର ଶିଖରରେ ବିଶ୍ୱକର୍ମା ଇନ୍ଦ୍ରଙ୍କର ଅମରାବତୀ ପରି ଲଙ୍କା ନାମକ ଏକ ସୁବର୍ଣ୍ଣ ନଗରୀ ନିର୍ମାଣ କରିଛନ୍ତି । ଏହାର ଚତୁର୍ଦ୍ଦିଗରେ ସୁବର୍ଣ୍ଣରେ ତିଆରି ପ୍ରାଚୀର ରହିଛି ଓ ପ୍ରାଚୀରର ଚାରିପାଖରେ ରହିଛି ପରିଖା । ନଗରର ଦ୍ୱାରଦେଶରେ ବୈଦୂର୍ଯ୍ୟ ମଣି ଖଚିତ ସୁବର୍ଣ୍ଣର ତୋରଣ ରହିଛି । ଏହି ନଗରୀ ପ୍ରଥମେ ରାକ୍ଷସମାନଙ୍କର ଥିଲା । କିନ୍ତୁ ଭଗବାନ୍ ବିଷ୍ଣୁଙ୍କ ଭୟରେ ସେମାନେ ପାତାଳପୁରକୁ ଚାଲି ଯାଇଛନ୍ତି । ସେଠାକାର ରାଜ୍ୟ ଓ ପ୍ରଜାମାନେ ସେହିପରି ରହିଛନ୍ତି; ରାଜସିଂହାସନ ଶୂନ୍ୟ ହୋଇ ପଡ଼ିଛି । ତୁ ଯାଇ ସେହି ରାଜ୍ୟରେ ରାଜା ହୋଇ ପ୍ରଜାପାଳନ କର ।"

ବୈଶ୍ରବଣ ପିତାଙ୍କ ଆଦେଶ ଶିରୋଧାର୍ଯ୍ୟ କଲେ । ସେ କେତେ ହଜାର ଅଧିକ ପ୍ରଜା



ନିଜ ସହିତ ନେଲେ । ଆଗରୁ ମଧ୍ୟ ଅନେକ ସ୍ଥାନୀୟ ବାସିନ୍ଦା ଥା’ନ୍ତି । ସେଠାରେ ସେ ଗଜୁଡ଼ି କରି ଆନନ୍ଦରେ କାଳ କାଟିଲେ । ମଝିରେ ମଝିରେ ପୁଷ୍ପକ ବିମାନରେ ବସି ସେ ପିତାମାତାଙ୍କୁ ଦର୍ଶନ କରିବାକୁ ଯାଉଥା’ନ୍ତି ।”

ଅଗସ୍ତି ମୁନିଙ୍କଠାରୁ ଏହି ବୃତ୍ତାନ୍ତ ଶୁଣି ଶ୍ରୀରାମଚନ୍ଦ୍ର ବହୁତ ଆଶ୍ଚର୍ଯ୍ୟ ହେଲେ । ପୁଣି ସେ କହିଲେ, “ମହାମୁନି, ମୁଁ ତ ଶୁଣିଛି ଯେ ଲଙ୍କାର ରାକ୍ଷସ ବଂଶ ପୁଲସ୍ତ୍ୟଙ୍କର ବଂଶଜ । କିନ୍ତୁ ଆପଣ ତ କହୁଛନ୍ତି କି ରାକ୍ଷସମାନେ ତା’ ଆଗରୁ ମଧ୍ୟ ସେଠାରେ ରହିଥିଲେ । ଦୟାକରି ଏବେ କୁହନ୍ତୁ ଯେ ସେହି ରାକ୍ଷସ-ମାନଙ୍କର ମୂଳବ୍ୟକ୍ତି କିଏ ?”

ଶ୍ରୀରାମଚନ୍ଦ୍ରଙ୍କର ପ୍ରଶ୍ନର ଉତ୍ତର ଦେଇ ଅଗସ୍ତି ମୁନି କହିଲେ, “ପ୍ରଥମେ ଭଗବାନ୍ ବ୍ରହ୍ମା ଜଳର ସୃଷ୍ଟି କଲେ ଏବଂ ତାକୁ ରକ୍ଷା କରିବାକୁ କେତେକ ପ୍ରାଣୀ ସୃଷ୍ଟି କଲେ । ସେମାନେ କ୍ଷୁଧା ପିପାସାରେ ବ୍ୟାକୁଳ ହୋଇ କହିଲେ, “କୁହନ୍ତୁ, ଆମେ କ’ଣ କରିବୁ ?”

ବ୍ରହ୍ମା କହିଲେ, “ତୁମେମାନେ ଏହି ଜଳକୁ ରକ୍ଷା କରିବାର ଦାୟିତ୍ୱ ନିଅ ।”

ସେଥିମଧ୍ୟରୁ କେତେକ ପ୍ରାଣୀ ଜଳ ରକ୍ଷା କରିବାର ଦାୟିତ୍ୱ ନେଲେ ଆଉ କେତେକ ଜଳକୁ ଭକ୍ଷଣ କରିବାକୁ ଚାହିଁଲେ । ଯେଉଁମାନେ ରକ୍ଷା କରିବାର ଦାୟିତ୍ୱ ନେଲେ ସେମାନଙ୍କୁ ରାକ୍ଷସ କୁହାଗଲା । ଆଉ






ଯେଉଁମାନେ ଭକ୍ଷଣ କରିବାକୁ ଚାହିଁଲେ ସେମାନଙ୍କୁ ଯକ୍ଷ ବୋଲି କୁହାଗଲା ।

ରାକ୍ଷସମାନଙ୍କ ମଧ୍ୟରେ ହେତି ଓ ପ୍ରହେତି ନାମକ ଦୁଇଜଣ ଭାଇ ଥିଲେ । ପ୍ରହେତି ତପସ୍ୟା କରିବାକୁ ଚାଲିଗଲା ଆଉ ହେତି ବିବାହ କରି ସଂସାର କରି ରହିବାକୁ ମନସ୍ଥ କଲା । ସେଥିପାଇଁ ସେ ଉପଯୁକ୍ତ ପତ୍ନୀ ଖୋଜିବାକୁ ବାହାରିଲା । ଶେଷରେ ସେ ଯମର ଭଉଣୀ ଭୟାକୁ ବିବାହ କଲା । ଭୟଙ୍କର ରୂପ ଓ ସ୍ୱଭାବ ଯୋଗୁ ତା'ର ନାମ ଥିଲା ଭୟା ।

କିଛିଦିନ ପରେ ହେତିର ଗୋଟିଏ ପୁଅ ଜନ୍ମ ହେଲା । ତା'ର ନାମ ରଖାଗଲା ବିଦ୍ୟୁତ୍‌କେଶ; ସେ ସୂର୍ଯ୍ୟଙ୍କ ପରି ତେଜସ୍ୱୀ ଥିଲା ।

ତା'ର ଯୁବା ବୟସ ପ୍ରାପ୍ତ ହେବା ମାତ୍ରେ ତା'ର ପିତା ତାକୁ ସନ୍ଧ୍ୟା ନାମକ ଏକ ସ୍ତ୍ରୀର ଝିଅ ସାଲକଣ୍ଟକ ସହିତ ବିବାହ ଦେଲା । ବିଦ୍ୟୁତ୍‌କେଶ ଓ ଶାଳକଣ୍ଟକ ଦୁହେଁ ଆନନ୍ଦରେ କାଳାତିପାତ କଲେ । କିଛିଦିନ ଉତ୍ତାରୁ ସେମାନଙ୍କର ପୁଅଟିଏ ହେଲା । ପୁଅକୁ ମନ୍ଦର ପର୍ବତ ନିକଟରେ ଛାଡିଦେଇ ପତି ପତ୍ନୀ ଦୁହେଁ ଭ୍ରମଣ କରିବାକୁ ଗଲେ ।

ଶିଶୁଟି କ୍ଷୁଧାର ଜ୍ୱାଳାରେ ମୁହଁରେ ଅଙ୍ଗୁଳି ଭରି ପଡି ରହିଥାଏ ଓ ମଟିରେ ମଟିରେ କାନ୍ଦୁଥାଏ । ଠିକ୍ ସେହି ସମୟରେ ବୃଷଭ ଉପରେ ବସି ଉଡି ଯାଉଥିଲେ ଶିବପାର୍ବତୀ । ପିଲାଟିର କ୍ରନ୍ଦନ ଶୁଣି ସେମାନଙ୍କ ମନରେ ଦୟା ହେଲା । ସେମାନେ ଆକାଶରୁ ଓହ୍ଲାଇ ପିଲାକୁ ଆଶିର୍ବାଦ କଲେ । ଶିବ ତାକୁ ଚିରଞ୍ଜୀବୀ ହେବା ପାଇଁ ବର ପ୍ରଦାନ କଲେ ଓ ଆକାଶରେ ଉଡି ପାରୁଥିବା ଏକ ନଗର ପ୍ରଦାନ କଲେ ।

ସେହି ଶିଶୁର ନାମ ଥିଲା ସୁକେଶ । କ୍ରମେ ସେ ବଡ଼ ହେଲା । ଶିବପାର୍ବତୀଙ୍କ ବରଦାନ ଯୋଗୁ ଶକ୍ତିଶାଳୀ ହୋଇ ସେହି ରାକ୍ଷସ ନିର୍ଭୟରେ ଚତୁର୍ଦ୍ଦିଗରେ ବିଚରଣ କଲା ।

ଗ୍ରାମଣୀ ନାମକ ଏକ ଗନ୍ଧର୍ବ ଯେତେବେଳେ ଏକଥା ଶୁଣିଲା ଯେ ସୁକେଶ କେବଳ ଯେ ଶିବଙ୍କ ବରଦାନ ଯୋଗୁ ଶକ୍ତିଶାଳୀ ହୋଇଛି ତାହା ନୁହେଁ, ଆହୁରି ମଧ୍ୟ ସେ ଧର୍ମାତ୍ମା, ସେତେବେଳେ ସେ ତା'ର ସୁନ୍ଦରୀ ଓ

ଗୁଣବତୀ କନ୍ୟା ଦେବବତୀଙ୍କୁ ସୁକେଶୁ ସହିତ ବିବାହ କରାଇଲା । ଦେବବତୀ ମଧ୍ୟ ଏପରି ସ୍ୱାମୀଙ୍କୁ ପାଇ ଖୁବ୍ ଖୁସି ହୋଇଗଲା ।

କାଳକ୍ରମେ ସେମାନଙ୍କର ମାଲ୍ୟବନ୍ତ, ସୁମାଳୀ ଓ ମାଳୀ ନାମକ ତିନୋଟି ପୁତ୍ର ଜନ୍ମ ହେଲେ । ସେହି ତିନିପୁତ୍ର ଥିଲେ ମହା-ଶକ୍ତିଶାଳୀ, ଭୟଙ୍କର ଓ ନିର୍ଦ୍ଦୟ । ସେମାନେ ଯେତେବେଳେ ନିଜ ପିତାଙ୍କ ତପସ୍ୟା ଓ ବରପ୍ରାପ୍ତି ବିଷୟରେ ଶୁଣିଲେ, ସେମାନେ ମଧ୍ୟ ସେହିପରି ତପସ୍ୟା କରିବାକୁ ମନସ୍ଥ କରି ମେରୁପର୍ବତକୁ ଗଲେ । ସେଠାରେ ତିନିଜଣ କଠୋର ତପସ୍ୟା କରିବାକୁ ଆରମ୍ଭ କଲେ । ତପସ୍ୟା ଶକ୍ତିରେ ତିନିପୁର କମ୍ପି ଉଠିଲା । ତପସ୍ୟାରେ ସନ୍ତୁଷ୍ଟ ହୋଇ ବ୍ରହ୍ମା ସେମାନଙ୍କ ପାଖରେ ଆବିର୍ଭୂତ ହୋଇ କହିଲେ, "ଏବେ କ'ଣ ବର ଚାହଁ ମାଗ ।"

"ଭଗବାନ୍, ଯଦି ଆମ ଉପରେ ପ୍ରସନ୍ନ ହୋଇଛନ୍ତି ତେବେ ଆମକୁ ଏହି ବର ଦିଅନ୍ତୁ ଯେ କାହା ହାତରେ ଯେପରି ଆମର ପରାଜୟ ନ ହୁଏ । ସମସ୍ତ ପ୍ରକାର ଶତ୍ରୁଙ୍କୁ ଯେପରି ଆମେ ସଂହାର କରି ପାରିବୁ । ଆମକୁ ସୁଖମୟ ଜୀବନ ସହିତ ଦୀର୍ଘାୟୁ ପ୍ରାପ୍ତ ହେଉ ।"

"ତଥାସ୍ତୁ" କହି ବ୍ରହ୍ମା ଅନ୍ତର୍ଦ୍ଧାନ ହେଲେ ।

ଏହି ବର ପ୍ରାପ୍ତ କରିବା ପରେ ଏହି ତିନି ରାକ୍ଷସ ତିନିଲୋକରେ ସମସ୍ତଙ୍କ ସହ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କରି ସମସ୍ତ ରାଜ୍ୟ ଅଧିକାର କଲେ । ଦେବତା, ଋଷି, ଗନ୍ଧର୍ବ, ସିଦ୍ଧ, ମାନବ, କେହି ହେଲେ ଯୁଦ୍ଧରେ ସେମାନଙ୍କ ସମ୍ମୁଖରେ ତିଷ୍ଠି ପାରିଲେ ନାହିଁ ।



ଦିନେ ତିନି ରାକ୍ଷସ ବିଶ୍ୱକର୍ମାଙ୍କୁ ଡାକି ଆଦେଶ ଦେଇ କହିଲେ, "ତମେ ହିମାଳୟ, ସୁମେରୁ ବା ମନ୍ଦରାଚଳରେ କୈଳାସ ପରି ଏକ ନଗରୀ ଆମ ପାଇଁ ନିର୍ମାଣ କର । ଆମେ ଶୁଣିଛୁ ଯେ ସମସ୍ତ ଦେବନଗରୀ ଓ ଭବନ ସବୁର ନିର୍ମାତା ହେଉଛ ତୁମେ ।"

ବିଶ୍ୱକର୍ମା କହିଲେ, "ଦକ୍ଷିଣ ସମୁଦ୍ର ତଟରେ ତ୍ରିକୂଟ ଓ ସୁବେଳ ନାମକ ଦୁଇଟି ପର୍ବତ ଅଛି । ତ୍ରିକୂଟ ପର୍ବତର ଶିଖର ଦେଶରେ ଇନ୍ଦ୍ରଙ୍କ ଆଜ୍ଞାରେ ମୁଁ ଲଙ୍କା ନାମକ ଏକ

ସୁନ୍ଦର ନଗରୀ ନିର୍ମାଣ କରିଛି । ସେ ନଗରୀ ସ୍ୱର୍ଗର ସମକକ୍ଷ । ତାହା ମଧ୍ୟରେ ସୁନାର ପାଚେରି ଓ ବୈଦୂର୍ଯ୍ୟର ସ୍ତମ୍ଭ ସବୁ ରହିଛି । ତମେମାନେ ନିଜର ରାକ୍ଷସବଂଶ ନେଇ ସେହିଠାରେହିଁ ରାଜ୍ୟ କର, କେହି ତୁମକୁ ଅଟକାଇବେ ନାହିଁ ।"

ଏପରି କଥା ବିଶ୍ୱକର୍ମାଙ୍କ ମୁଖରୁ ଶୁଣି ତିନିଭାଇ ମହା ଆନନ୍ଦ ହେଲେ । ସଙ୍ଗେ ସଙ୍ଗେ ତିନିଜଣଯାକ ଯାଇ ଲଙ୍କା ନଗରୀରେ ପହଞ୍ଚି ତାହାର ଅତୁଳନୀୟ ଶୋଭା ନିରୀକ୍ଷଣ କଲେ । ସେହି ସମୟରେ ନର୍ମଦା ନାମ୍ନୀ ଏକ ଗନ୍ଧର୍ବ ସ୍ତ୍ରୀ ନିଜର ରୂପବତୀ ତିନୋଟି କନ୍ୟାଙ୍କୁ ନେଇ ଗାଧୋଇବାକୁ ଯାଉଥିଲେ । ସେମାନେ ପରସ୍ପରକୁ ଦେଖିଲେ ଓ ମନେ ମନେ ବରଣ କଲେ । ଅବଶେଷରେ ସେମାନଙ୍କର ଯଥାରୀତି ବିବାହ ସମ୍ପନ୍ନ ହେଲା ।

ଜ୍ୟେଷ୍ଠ ମାଲ୍ୟବନ୍ତର ପତ୍ନୀର ନାମ ଥିଲା ସୁନ୍ଦରୀ । ସେମାନଙ୍କର ବଜ୍ରମୁଷ୍ଟି, ବିରୂପାକ୍ଷ, ଦୁର୍ମୁଖ, ସୁପ୍ତଘ୍ନ, ଯଜ୍ଞକୋପ, ମତ୍ତ ଓ ଉନ୍ମତ୍ତ ନାମରେ ସାତପୁତ୍ର ଥିଲେ ଓ ଅନନ୍ଦା ନାମରେ ଗୋଟିଏ ଝିଅ ଥିଲା ।

ସୁମାଳୀର ପ୍ରିୟ ପତ୍ନୀ କେତୁମତୀର ଗର୍ଭରୁ ପ୍ରହସ୍ତ, ଅକମ୍ପନ, ବିକଟ, କାଳକାର୍ମୁକ, ଧୂମ୍ରାକ୍ଷ, ଦଣ୍ଡ, ସୁପାର୍ଶ୍ୱ, ସହ୍ରାଦୀ, ପ୍ରଘସ ଓ ଭାସକର୍ଣ୍ଣ ନାମକ ଦଶପୁତ୍ର ଓ ପୁଷ୍ପୋତ୍କଟା, କୈକସୀ, ଶୁଚିସ୍ମିତା ଓ କୁମ୍ଭୀନସୀ ନାମକ ଚାରି କନ୍ୟା ଜନ୍ମ ଦେଲେ ।

ମାଳୀଙ୍କ ପତ୍ନୀ ଜନ୍ମ ଦେଇଥିଲେ କେବଳ ଚାରିଟି ପୁଅ । ସେମାନଙ୍କ ନାମ ହେଲା ଅନିଳ, ଅନଳ, ହର ଓ ସମ୍ପାତି । ସେମାନେ ପରେ ବିଭୀଷଣଙ୍କ ମନ୍ତ୍ରୀ ହେଲେ ।

ଏହି ଭାବରେ ଏହି ତିନି ରାକ୍ଷସ ନିଜ ପରିବାର ସହିତ ଲଙ୍କାରେ ବାସ କଲେ । ସେମାନେ ବ୍ରହ୍ମାଙ୍କ ବର ପ୍ରଭାବରୁ ନିରଙ୍କୁଶ ଭାବରେ ତିନି ଭୁବନ ଜୟ କରି ପ୍ରମତ୍ତ ଭାବରେ ଘୁରି ବୁଲିଲେ ।



# ମଙ୍ଗଳନାଥ

ମଙ୍ଗଳନାଥ ଓରଫ ମଙ୍ଗୁ ସାରା ଜୀବନରେ ବହୁ ପାପ, ଅପରାଧ କରିଥାଏ । ମୃତ୍ୟୁ ପରେ ଯମଦୂତ ତାକୁ ନେଇ ନରକର ଦ୍ୱାରରେ ଛାଡ଼ିଲା ।

ସେଠାରେ ଦ୍ୱାରପାଳ ଏକ ସୁସଜ୍ଜିତ ଆସନ ଉପରେ ବସିଥାଏ । ମଙ୍ଗୁ ତାକୁ କହିଲା, “ ଆହେ ଦ୍ୱାରପାଳ, ଟିକିଏ ଯାଇ ଚିତ୍ରଗୁପ୍ତଙ୍କ ପାଞ୍ଜିଟା ଭଲ କରି ଦେଖିବେ କି ନରକ ପାଇଁ ଉଦ୍ଦିଷ୍ଟ ଯେଉଁ ମଙ୍ଗୁ ସେ ମୁଁ ନା ନୁହେଁ । ଆମ ଗାଁରେ ତ ଚାରିଟା ମଙ୍ଗୁ ଅଛନ୍ତି ।”

ଦ୍ୱାରପାଳ ଏକଥା ଶୁଣି ବଡ଼ ଚିନ୍ତିତ ହେଲା ଓ କାଳେ ଜଣେ ବିନା ଅପରାଧରେ ଦଣ୍ଡ ପାଇବ, ସେହି ଭୟରେ ସେ ଶୀଘ୍ର ଚିତ୍ରଗୁପ୍ତଙ୍କ ପାଖକୁ ଖବର ବୁଝିବାକୁ ଗଲା ।

ଏଣେ ଏହି ସୁନାର ବହୁମୂଲ୍ୟର ଆସନ ଦେଖି ମଙ୍ଗୁ ତାକୁ ମୁଣ୍ଡରେ ମୁଣ୍ଡାଇ ପଳାଇବାକୁ ଭାବିଲା । କାରଣ ଯଦି ଇତିମଧ୍ୟରେ ଏଇଟି ବିକ୍ରି କରିପାଏ ତେବେ ଅନେକ ଲାଭ ହେବ । ଠିକ୍ ସେତିକିବେଳେ ଆସି ପହଞ୍ଚିଲେ ଦ୍ୱାରପାଳ ଓ ଚିତ୍ରଗୁପ୍ତ । ଚିତ୍ରଗୁପ୍ତ ମଙ୍ଗୁକୁ ଏପରି ଅବସ୍ଥାରେ ଦେଖି କହିଲେ, “ ଆରେ ଚୋର, ତୁ ଏଠାକୁ ଆସି ବି ତୋ ବଦ ଅଭ୍ୟାସ ଛାଡ଼ିଲୁ ନାହିଁ ? ଏଇଟା କ’ଣ ମର୍ତ୍ତ୍ୟ ଯେ ଚୋରୀ କରି ବିକିବୁ ? ଯାହାହେଉ ମୁଁ ଟିକିଏ ସନ୍ଦେହରେ ପଡ଼ିଥିଲି । ଏବେ ମୁଁ ସମ୍ପୂର୍ଣ୍ଣ ନିଃସନ୍ଦେହ ଯେ ତୁହି ସେଇ ମଙ୍ଗୁ । ଯା ବାବୁ ଏଥର ନିଜ ପାପ କର୍ମର ଫଳ ଭୋଗ କର ।” ଏତିକି କହି ଚିତ୍ରଗୁପ୍ତ ଚାଲିଗଲେ ।





# ବଗୁଲିଆ ଭୂତ

ବୀରବାବୁ ଜମିଦାର ଲୋକ । ସୁସ୍ୱାଦୁ ଜିନିଷମାନ ପ୍ରସ୍ତୁତ କରାଇ ଆରାମରେ ଖାଆନ୍ତି ଓ ତା'ପରେ ଆରାମରେ ଶୋଇବାକୁ ଚେଷ୍ଟା କରନ୍ତି !

କିନ୍ତୁ ହାୟ୍ ! ନିଦଟି ଆରାମରେ ଆସେ ନାହିଁ । ସେ ରାତସାରା କଡ଼ ଲେଉଟାନ୍ତି ଓ ଛଟପଟ ହେଉଥାନ୍ତି ।

ଦିନେ ରାତରେ ସେ ହଠାତ୍ ଗୋଟାଏ ଶବ୍ଦ ଶୁଣିଲେ । ଉଠି ପଡ଼ି ଅନାଇ ଦେଖିଲେ, ତାଙ୍କ କୋଠରୀ ଭିତରେ ଥିବା ଘଡ଼ରୁ ଗୋଟାଏ ଲମ୍ବା ମୂର୍ତ୍ତି ତଳକୁ ଡେଇଁ ପଡ଼ୁଛି । ମୂର୍ତ୍ତି ପୁଣି ଉପରକୁ ଉଠିଗଲା ଓ ପୁଣି ଡେଇଁଲା । ସେ ପୁଣି ହି ହି କରି ହସୁଥାଏ !

ବୀରବାବୁ ବୁଝିଲେ, ଏ ଗୋଟାଏ ଭୂତ । ତା' ଚେହେରା ଗୋଟାଏ ବାଳକ ଭଳି । ବୀରବାବୁ ଡରିଗଲେ ଓ ହନୁମାନଙ୍କୁ ସ୍ମରଣ କଲେ । ହନୁମାନଙ୍କୁ ଡାକିଲେ ଭୂତ ପ୍ରେତ ପଳାଇଯା'ନ୍ତି ବୋଲି ସେ ଜାଣିଥିଲେ ।

ଭୂତ ହସିଲା ଓ କହିଲା, "ହନୁମାନ ମୋତେ ତଡ଼ିବେ ନାହିଁ । କାରଣ ଆମେ ମଣିଷ ଥିଲାବେଳେ ହନୁମାନଙ୍କୁ ପୂଜା କରୁଥିଲୁଁ । ଆମ ପ୍ରତି ତାଙ୍କର କୃପା ଅଛି ।"

ବୀରବାବୁ ଆହୁରି ଡରିଗଲେ ।

ଭୂତ ପୁଣି କହିଲା, "ଆଚ୍ଛା ବାବୁ, ତମେ ଡରୁଛ କାହିଁକି କହିଲ ? ମୁଁ କ'ଣ ତମର କିଛି ଅନିଷ୍ଟ କରୁଛି ? ମୁଁ ଖାଲି ଏଠି ଖେଳୁଛି । ତମର ସେଥିରେ କ୍ଷତି ହେଉଛି କ'ଣ ?"

ଏହା କହି ଭୂତ ପୁନରାୟ ତା' ଡିଆଡେ଼ଇଁ ଖେଳ ଆରମ୍ଭ କଲା । ସେ ଘଡ଼ ଉପରକୁ ବେଲୁନ୍ ଭଳି ଉଠି ଯାଉଥାଏ ଓ ତା'ପରେ ତଳକୁ ଡେଇଁ ପଡ଼ୁଥାଏ । ଡେଇଁ ସାରି

ସମରେନ୍ଦ୍ର

ବୀରବାବୁଙ୍କ ଆଡ଼େ ଢଣେଇ ଢଣେଇ ସେ ଅନାଉଥାଏ । ନିଜେ ହି ହି ହୋଇ ହସୁଥାଏ । ଥରେ ଥରେ ହସି ହସି ବୀରବାବୁଙ୍କ ଖଟିଆ ପାଖକୁ ଲଗି ଆସୁଥାଏ ।

ବୀରବାବୁ ପ୍ରଥମେ ଅତ୍ୟନ୍ତ ଭୟଭୀତ ହୋଇଥିଲେ, ଅଳ୍ପ ସମୟ ଭିତରେ ସେ ଭୀତଭାବ ବହୁ ମାତ୍ରାରେ କଟିଗଲା । ସେ ଉଠି ବସିଲେ ଓ କିଛି ସମୟ ପରେ ପୁଣି ଶୋଇଲେ । କିନ୍ତୁ ସେ ଅବସ୍ଥାରେ କ'ଣ ନିଦ ହୁଏ ?

"ଶୋଉଛ କ'ଣ ? ମୋ ଖେଳ ଦେଖ । ତମକୁ ଖେଳ ଭଲ ଲାଗେନାହିଁ କି ? ତମେ ଏମିତି କୁଦି ପାରିବ ? ଦେଖ, ଦେଖ, ଏହା ସାଧାରଣ ଖେଳ ନୁହେଁ !" ଭୂତ ଗର୍ବିତ ଭାବରେ କହିଲା । ତା'ପରେ ପୁଣି ହି ହି କରି ହସିଲା ।

ଏଥର ବୀରବାବୁ ଟିକିଏ ସାହସ ସଞ୍ଚୟ କରି କହିଲେ, "ତୁ ତ ବଡ଼ ବଗୁଲିଆ ଭୂତ ! ମୋତେ ଭଲା କାହିଁକି ହଇରାଣ କରୁଛୁ କହିଲୁ !"

"ତମକୁ ମୁଁ ହଇରାଣ କଲି କେତେବେଳେ ? ଆମେ ଭୂତ ହେଲୁଁ ବୋଲି କ'ଣ ଆମର ଖେଳିବାର ସ୍ୱାଧୀନତା ନାହିଁ ?"

"ଦେଖ ବାବା, ତୁ ଆମ ପଡ଼ୋଶୀ ମହାଜନ ଜଗୁ ଭୂୟାଁ ଘରକୁ ଯା । ତା' ଘର ଆହୁରି ପ୍ରଶସ୍ତ । ଜଗୁ ଶୋଇବା ଘରେ ଯେଉଁ ଘଡ଼ି ଅଛି, ତାହା ଆହୁରି ଉଚ୍ଚ । ତୋତେ



ଖେଳିବାକୁ ମଜା ଲାଗିବ ।" ବୀରବାବୁ ପରାମର୍ଶ ଦେଲେ ।

"ନା, ନା, ମୁଁ ଏଇଠି ଖେଳିବ । ତମ ସହ ପରିଚୟ ହୋଇଗଲାଣି । ପୁଣି ନୂଆ ଲୋକ ଘରକୁ ଯିବ କାହିଁକି ?" ଭୂତ କହିଲା ।

ବୀରବାବୁ ରାତିସାରା ଆଉ ଶୋଇ ପାରିଲେ ନାହିଁ । ସକାଳେ ସେ ନିଜ ପୁଅ ବୋଉଙ୍କୁ ସବୁ କହିଲେ । ପୁଅ ବୋହୂ କହିଲେ, "ବାପା, ତମେ ଆଜି ରାତିରେ ଆମ କୋଠରିରେ ଶୋଇବ । ଆମେ ତମ କୋଠରିରେ ଶୋଇବୁଁ ।"

ବୀରବାବୁ ରାଜି ହେଲେ । ପର ରାତିରେ ବୀରବାବୁ ଶୋଇଥିବା କୋଠରିରେହିଁ ଭୂତ

ପହଞ୍ଚିଗଲା ଓ କହିଲା, "ତମେ ଘର ବଦଳାଇଲ କାହିଁକି? ଚାଲ ଆଉ କୋଠରୀକୁ। ଏ କୋଠରୀ ଭଲ ନୁହେଁ।"

"ଆରେ! ତୁ ତ ବଡ଼ ଦୁଷ୍ଟ। ତୁ ସେଠି ଖେଳୁନୁ? ତୋତେ ମନା କରୁଛି କିଏ?" ବୀରବାବୁ କହିଲେ।

"ତମେ ଚାଲ। ନହେଲେ ଏ କୋଠରୀ ଭିତରେ ଗାଁ ଯାକର ଅଳିଆ ଆଣି ଗଦା କରିବ।" ଭୂତ ଧମକ ଦେଲା।

ବୀରବାବୁ ଅଧା ରାତିରେ ଉଠି ଯାଇ ପୁଅ ବୋହୂ କୋଠରୀ ଦ୍ୱାରରେ ଶବ୍ଦ ଦେଲେ ଓ ସେମାନଙ୍କୁ ନିଦରୁ ଉଠାଇ ସବୁ ବିଷୟ କହିଲେ। ପୁଅ ବୋହୂ ପରସ୍ପର ଅନାଇଲେ ଓ କହିଲେ, "ବେଶ୍ ବାପା, ତମେ ତେବେ ତମ ନିଜ କୋଠରୀକୁ ଫେରି ଆସ।"

ଏହା ପରେ ବୀରବାବୁ ନିଜ କୋଠରୀକୁ ଗଲେ ଓ ଭୂତ ଧୁମ୍‌ଧାମ କୁଦିଲା ଓ ହି ହି ହସିଲା। ଆଶ୍ଚର୍ଯ୍ୟର କଥା, ସେ ଶବ୍ଦ ବୀରବାବୁଙ୍କ ଛଡ଼ା ଆଉ କେହି ଶୁଣି ପାରୁ ନଥିଲେ। ବୀରବାବୁ ରାତିରେ ଯାହା ଠିକିଏ ଶୋଇଥିଲେ, ସେତିକି ନିଦ ଗଲା।

ଭୋର ସମୟରେ ସେ ଆଖି ବୁଜି ପଡ଼ିଛନ୍ତି, ଝରକା ଦେଇ ଭିଙ୍କି ମାରି ବୋହୂ ବାରନ୍ଦାରେ ବୁଲୁଥିବା ପୁଅକୁ କହିବାର ସେ ଶୁଣିଲେ, "ବାପାଙ୍କର କ'ଣ ହେଲା କହିଲ? ରାତି ଅଧରେ ଉଠି ଶୋଇବା ଘର ବଦଳାଉଛନ୍ତି, ପୁଣି ଭୂତ ଦେଖିବା କଥା କହୁଛନ୍ତି। ମୋତେ



କାହିଁକି ଘର ଅସୁବିଧା ଲାଗୁଛି । ମୁଣ୍ଡ ଠିକ୍ ଅଛି ତ ?" ପୁଅ କ'ଣ କହିଲା ବୀରବାବୁ ତାହା ଶୁଣି ପାରିଲେ ନାହିଁ । ପୁଅ ବୋହୂଙ୍କର ବା ଦୋଷ କ'ଣ ? ସେ ପାଗଳ ହୋଇଗଲେଣି ବୋଲି ଯଦି ସେମାନେ ଭାବନ୍ତି, ତେବେ ବି କିଛି କରିବାର ଉପାୟ ନାହିଁ ।

ଏହିପରି ଭାବରେ କିଛିଦିନ ବିତିଗଲା । ବୀରବାବୁଙ୍କ ଦୁଃଖ କହିଲେ ନ ସରେ ।

ପାଞ୍ଚଦିନ ପରେ ହଠାତ୍ ଜଣେ ବନ୍ଧୁଙ୍କ ଘରୁ ସାରା ପରିବାର ପାଇଁ ନିମନ୍ତ୍ରଣ ଆସିଲା । ବୀରବାବୁ ନିଜ ଘରେ ଗୋଟିଏ ପଡ଼ୋଶୀ ଦମ୍ପତିଙ୍କୁ ରଖାଇ ଦେଇ ଗଲେ ।

ଯେଉଁ ତିନି ରାତି ସେ ବନ୍ଧୁଙ୍କ ଘରେ ଶୋଇଲେ, ସେ ତିନି ରାତିରେ ସେ ଭଲ ଭାବରେ ନିଦ୍ରାଗଲେ । ଅନେକ ରାତି ପରେ ଶାନ୍ତିରେ ଶୋଇ ପାରି ସେ ଯେତିକି ଖୁସି ହେଲେ, ଘରକୁ ଫେରିବା ସମୟ ନିକଟ ହୋଇ ଆସିବାରୁ ସେ ସେତିକି ଚିନ୍ତିତ ହେଲେ । ପୁଣି ସେ ବଗୁଲିଆ ଭୂତ ହାବୁଡ଼ରେ ପଡ଼ି ରାତିରେ ଯେତିକି ସାମାନ୍ୟ ନିଦ ହେଉଥିଲା ସେତିକି ହରାଇବାକୁ ପଡ଼ିବ !

ତିନିଦିନ ପରେ ବୀରବାବୁ ସପରିବାରେ ନିଜ ଘରକୁ ଫେରିଲେ । ତାଙ୍କ ପାଇଁ ଘର ଜଗିଥିବା ଦମ୍ପତିଙ୍କୁ ପଚାରିଲେ, "କହୋ, ତମର କିଛି ଅସୁବିଧା ହୋଇ ନାହିଁ ତ ?"

ଅସୁବିଧା କାହିଁକି ହେବ, ବାବୁ ?"

"ମାନେ, ରାତିରେ ଭଲ କରି ଶୋଇଥିଲ ତ ? ବୀରବାବୁ ପଚାରିଲେ । ସେ ନିଜ





କୋଠରୀଟି ସେ ଦମ୍ପତିଙ୍କୁ ଛାଡି ଦେଇ ଯାଇଥିଲେ ।

"ଖୁବ୍ ଭଲରେ ଶୋଇଲୁଁ । ଆପଣଙ୍କ ଉଦ୍ୟାନରୁ ଯେଉଁ ସୁନ୍ଦର ସୁଲ୍ ସୁଲ୍ ପବନ ଆସୁଥାଏ, ସେଥିରେ ଭଲ ନିଦ ନହେବ କାହାକୁ ?" ସେମାନେ କହିଲେ ।

ବୀରବାବୁ ଦୀର୍ଘନିଃଶ୍ୱାସ ଛାଡି ଚୁପ୍ ରହିଲେ ।

ସେଦିନ ରାତିରେ ସେ ଭୂତକୁ ଅପେକ୍ଷା କରିଥାନ୍ତି । କିନ୍ତୁ ଭୂତ ଆସିଲା ନାହିଁ । ସେ ଆଶ୍ୱସ୍ତ ହେଲେ । ତେଣିକି ଆଉ ଭୂତର ଦେଖା ମିଳିଲା ନାହିଁ ।

ଦିନେ ବୀରବାବୁଙ୍କ ବୋହୂକୁ ପଡ଼ୋଶୀ ମହାଜନ ଜଗୁଭୂୟାଁଙ୍କ ଝିଅ କହିଲା, "ବାପା କହୁଛନ୍ତି ରାତିରେ ଗୋଟାଏ ଭୂତ ଆସି ତାଙ୍କ କୋଠରୀରେ ଉପଦ୍ରବ କରୁଛି । ସେ ଖଟ ଉପରୁ ବାରମ୍ବାର ଡେଉଁଛି ଓ ହି ହି ହସୁଛି ।"

ବୀରବାବୁଙ୍କ ପୁଅ ବୋହୂ ସେ ପର୍ଯ୍ୟନ୍ତ ଭାବିଥିଲେ ଯେ ବୀରବାବୁଙ୍କ ଭୂତ ଦେଖା ତାଙ୍କ ମନର ଭ୍ରମ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଏକା ପ୍ରକାର ଭୂତ ଜଗୁଭୂୟାଁଙ୍କ ଘରେ ଏକା ପ୍ରକାର ବ୍ୟବହାର କରୁଛି ଶୁଣି ସେମାନେ ଆଶ୍ଚର୍ଯ୍ୟ ହେଲେ ।

"ମୋ ଶ୍ୱଶୁର ବି ସେମିତି ଭୂତ ଦେଖୁଥିଲେ । ତମ ବାପାଙ୍କୁ କୁହ, ସେ ତାଙ୍କ ସହ କଥା ହେବେ ।" ବୀରବାବୁଙ୍କ ବୋହୂ ଭୂୟାଁଙ୍କ ଝିଅକୁ କହିଲା ।

ଭୂୟାଁ ବୀରବାବୁଙ୍କ ସହ କଥା ହେଲେ । ବୀରବାବୁ କହିଲେ, "ଆଚ୍ଛା, ଆଜି ରାତିରେ ମୁଁ ବି ତମ କୋଠରୀରେ ଶୋଇବି ।"

ରାତିରେ ଭୂତ ଆସି ପହଞ୍ଚିଗଲା ଓ ବୀରବାବୁଙ୍କୁ ଚିହ୍ନି ଖୁସି ହୋଇ କହିଲା, "ତମେ ଠିକ୍ କହୁଥିଲ । ଏହାଙ୍କ କୋଠରୀର ଖଟ ଉଚ ।"

"କିନ୍ତୁ ତୋତେ ଯେବେ କହିଲି, ସେବେ ଏଠାକୁ ନ ଆସି କିଛିଦିନ ପରେ କାହିଁକି ଆସିଲୁ ?" ବୀରବାବୁ ପଚାରିଲେ ।

ଭୂତ କହିଲା, "ତମେ ଯେଉଁଦିନ ଘର ଛାଡ଼ି ଗଲ ଓ ଆଉ ଦୁଇଜଣ ତମ କୋଠରୀରେ

ଶୋଇଲେ, ସେହିଦିନ ତମ ଦେଇଥିବା ଏ ଠିକଣା ମୋର ମନେ ପଡ଼ିଲା ଓ ଏଠିକି ଆସି ଦେଖିଲି ଏହା ଠିକ୍ ଯାଗା । କଥା କ'ଣ କି, ଜଣେ କେହି ମୋ ସହ ନ ଲଗାଇଲେ, ଛଡ଼ଚଡ଼ ନ ହେଲେ, ମୋତେ ଖେଳିବାକୁ ସୁଖ ଲାଗେ ନାହିଁ ।

"ତମେ ଯେଉଁ ଦମ୍ପତିଙ୍କୁ ରଖାଇ ଦେଇ ଗଲ, ସେ ଦୁଇଟା ଗଧଙ୍କ ଭଳି ନିଘୋଡ଼ ନିଦରେ ଶୋଇଗଲେ । ସେମାନଙ୍କ ଆଗରେ ନାଚକୁଦ କରିବା ଯାହା କାଲ ଆଗରେ ମୂଳା ଚୋବାଇବା ସେଇଆ । ସେଉଠୁ ମୁଁ ଏଠାକୁ ଆସିଲି । ଦେଖିଲି, ତମ ଭଳି ଏ ବାବୁ ବି ଡରୁଛନ୍ତି । ତେଣୁ ମୋତେ ମଜା ଆସିଲା । ସେଉଠୁ ମୁଁ ସବୁ ରାତିରେ ଏଠାକୁ ଆସୁଛି ।"

ଏହା କହି ଭୂତ ଖେଳିବାରେ ଲାଗିଗଲା ।

ସକାଳ ହେବା ପୂର୍ବରୁ ଭୂତ ସେଠାରୁ ବିଦାୟ ନେଇ ଚାଲିଗଲା । ବୀରବାବୁ ଓ ଜଗୁବାବୁ ହାଇ ମାରି ମାରି ବାହାରକୁ ଆସିଲେ । ଭୋର ହେବା ବେଳକୁ ଶୀତଳ ପବନରେ ବାରନ୍ଦାରେ ସେମାନେ ଟିକିଏ ଶୋଇଲେ ।

ବୀରବାବୁ ଓ ଜଗୁଭୂୟାଁ ବୁଝିଲେ, ଭୂତ ହାତରୁ ନିସ୍ତାର ପାଇବାର ଏକମାତ୍ର ଉପାୟ ନିଦରେ ଶୋଇବା । ଆଖିକୁ ଭଲ ନିଦ ଆଣିବାକୁ ହେଲେ ପରିଶ୍ରମ କରିବା ଲୋଡ଼ା । ଜମିଦାର ଓ ମହାଜନ ଉଭୟଙ୍କର କିଛି ଅଭାବ ନଥିଲା । ତେଣୁ ସେମାନେ ଖାଲି ବସି ରହୁଥିଲେ । ପରଦିନଠାରୁ ଦୁଇ ବନ୍ଧୁ ପରିଶ୍ରମ କରିବାକୁ ଲାଗିଲେ । ଜମିଦାର ନିଜ ବଗିଚାରେ କାମଦାମ କଲେ । ମହାଜନ ଗୋଟିଏ ବିଦ୍ୟାଳୟ ଖୋଲିବା ପାଇଁ ବ୍ୟବସ୍ଥା କଲେ ଓ ସେ ଦିଗରେ ସାରା ଦିନ କାମଦାମ କରି ରାତିକୁ କ୍ଳାନ୍ତ ହୋଇ ଶୋଇଲେ । ଭୂତ ତାଙ୍କୁ ଡରାଇ ନ ପାରି ବିରକ୍ତ ହୋଇ ଚାଲିଗଲା ।



# କଟୁଆଲଙ୍କ "ଭୁଲ୍" ବୁଝା

ଗୋଲକଣ୍ଡା ଦୁର୍ଗ ଯେଉଁ ପାହାଡ଼ ଉପରେ ଅବସ୍ଥିତ, ତା' ପାଦଦେଶରେ ଗୋଟିଏ ଯୁବକ ବୁଲୁଥିଲା ।

ତା' ଗତିବିଧିରେ ସନ୍ଦେହ କରି ଜଣେ ସିପାହୀ ତାକୁ ପଚାରିଲା, "ତମେ କିଏ ?" ଯୁବକଟି ହତଚକିତ ହେଲା । କିନ୍ତୁ ସେ ଯାହା କହିଲା, ସିପାହୀ ସେକଥା ବୁଝି ପାରିଲା ନାହିଁ । ପୂର୍ବ ରାତିରେ ଅନ୍ୟ ସହରରୁ ଆସିଥିବା ଜଣେ ବଣିକଙ୍କୁ କେହି ହତ୍ୟା କରିଥାଏ । ହତ୍ୟାକାରୀଙ୍କୁ ଖୋଜା ଚାଲିଥାଏ । ସିପାହୀ ସେ ଯୁବକକୁ ଧରି କଠୁଆଲ ପାଖକୁ ନେଇଗଲା ।

"ତମେହିଁ ହତ୍ୟାକାରୀ । ମାନିଯାଅ । ଆମଠିଁ ପ୍ରମାଣ ଅଛି !" କଠୁଆଲ ଧମକ ଦେଇ କହିଲେ ।

ଯୁବକଟି ଗୋଟିଏ ବିଦେଶୀ ଭାଷାରେ ଉତ୍ତର ଦେଲା, "ଆପଣଙ୍କ ସନ୍ଦେହ ଠିକ୍, ହଜୁର୍ !"

ସେ ଭାଷା ବୁଝୁ ନଥିବା ସିପାହୀଟି ପଚାରିଲା, "କଠୁଆଲ ମହୋଦୟ, ସେ କ'ଣ କହୁଛି ?"

"ସେ ଅପରାଧ ସ୍ୱୀକାର କରୁଛି ।" ଏହା କହି କଠୁଆଲ ଯୁବକକୁ ପଚାରିଲେ, "ସେ ବଣିକଠିଁ ଥିବା ଧନରତ୍ନ କ'ଣ କଲ ?"

"ହଜୁର୍ ! ଦୁର୍ଗ ପଛ ପଟରେ ଠାଏଁ ଲୁଚାଇ ରଖିଛି । ମୋତେ ଛାଡ଼ିଦେଲେ ସେସବୁ ଆପଣଙ୍କୁ ଦେଇ ଦେବି ।" ଯୁବକ କହିଲା ।

ସିପାହୀ କଠୁଆଲକୁ ପଚାରିଲା, "ସେ କ'ଣ କହୁଛି ?"

କଠୁଆଲ କହିଲେ, "ସିପାହୀ ! ମୁଁ ଭୁଲ୍ ବୁଝିଥିଲି । ଏ ଯୁବକ ମୋଟେ ଅପରାଧୀ ନୁହେଁ । ତମେ ଯାଅ । ମୁଁ ଏହାଠୁଁ ତା' ଦେଶକଥା କିଛି ବୁଝିବି ।"

ତତ୍‌କ୍ଷଣାତ୍ ଯୁବକ ଜଣକ ନିଜର ସନନ୍ଦ ବାହାର କରି ଦେଖାଇଲେ । ସେ ନବାବ୍‌ଙ୍କ ନବନିଯୁକ୍ତ ମନ୍ତ୍ରୀ ସାଲିମ ଖାଁ । ସେ କହିଲେ, "କଠୁଆଲ ! ତମ ଦୁର୍ନୀତି ବିଷୟରେ ଆମେ ଅନେକ କଥା ଶୁଣିଥିଲୁଁ । ଆଜି ତା'ର ପ୍ରତ୍ୟକ୍ଷ ପ୍ରମାଣ ପାଇଲି ।" ଏହା କହି ସେ ସିପାହୀକୁ ନିର୍ଦ୍ଦେଶ ଦେଲେ, "କଠୁଆଲକୁ ବରଖାସ୍ତ୍ କରି । ଏହାକୁ ବନ୍ଦୀ କର ।"






# ବରାହମିହିର

ସ୍ୱର୍ଣ୍ଣଦେଶର ମହାରାଜ ଭରତ ଥିଲେ ଅତ୍ୟନ୍ତ ଜନପ୍ରିୟ। ସେ ଛଦ୍ମବେଶରେ ବୁଲି ବୁଲି ପ୍ରଜାମାନଙ୍କର ଦୁଃଖସୁଖର ଖବର ରଖୁଥା'ନ୍ତି।

ଦିନେ ରାଜା, ମନ୍ତ୍ରୀ ପ୍ରଦ୍ୟୁମ୍ନଙ୍କୁ ନେଇ ବ୍ୟବସାୟୀ ବେଶରେ ଗୋଟିଏ ଛୋଟିଆ ସହରରେ ବୁଲୁଥା'ନ୍ତି, ବୁଲି ବୁଲି ଦେଖିଲେ ଗୋଟିଏ ଘର ସାମନାରେ ଜଣେ ବାଇଶ ବର୍ଷର ଯୁବକ ଠିଆ ହୋଇଛି। ଦେହ ସୁଗଠିତ ସ୍ୱାସ୍ଥ୍ୟ ସୁନ୍ଦର।

ଯୁବକ ସହିତ କଥାବାର୍ତ୍ତା କରି ଜାଣିଲେ ଯେ ତା'ର ନାମ ମିହିର। ସେ ଜ୍ୟୋତିଷ ବିଦ୍ୟା ଭଲ କରି ଜାଣେ। ମିହିର ଅତିଥି ଦୁହିଁଙ୍କୁ ସ୍ୱାଗତ କରି ଘରକୁ ନେଲା। ସେମାନେ ମିହିରଙ୍କୁ ପଚାରିଲେ, "ମହାଶୟ, ଆମେ ଦୁଇଜଣ ବ୍ୟବସାୟୀ ବ୍ୟବସାୟ କରିବାକୁ ବାହାରିଛୁ। ଆମ କାମ ସଫଳ ହେବ ନା ନାହିଁ କୁହନ୍ତୁ ଆଉରି ମଧ୍ୟ କୁହନ୍ତୁ କେଉଁ ଶୁଭ ମୁହୂର୍ତ୍ତରେ ଆମେ ବ୍ୟବସାୟ ଆରମ୍ଭ କରିବୁ?"

ମିହିର କହିଲେ, "ମହାନୁଭବ, ଆପଣ କ୍ଷତ୍ରିୟ। କାହିଁକି ଖାଲିଟାରେ ବ୍ୟବସାୟୀର ବେଶ ଧାରଣ କରିଛନ୍ତି? ମୋତେ ଲାଗୁଛି ଆପଣ ଏ ଦେଶର ବିଶିଷ୍ଟତମ ଦୁଇ ବ୍ୟକ୍ତି। ସମ୍ଭବତଃ ରାଜା ଓ ମନ୍ତ୍ରୀ।"

ରାଜା ଓ ମନ୍ତ୍ରୀ ଏକଥା ଶୁଣି ଖୁବ୍ ଆଶ୍ଚର୍ଯ୍ୟ ହେଲେ। ତା'ପରେ ରାଜା ମିହିରଙ୍କୁ ରାଜଧାନୀକୁ ନେଇଯାଇ ଦରବାରରେ ଏକ ଉଚ୍ଚ ପଦ ଦାନ କଲେ। କେତେବର୍ଷ ପରେ, ରାଜା ଭରତଙ୍କର ପୁତ୍ର ସନ୍ତାନଟିଏ ହେଲା। ରାଜ୍ୟର ସମସ୍ତ ଜ୍ୟୋତିଷ ରାଜପୁତ୍ରର ଜାତକ ତିଆରି କଲେ। ତା'ପରେ ସବୁ ଜ୍ୟୋତିଷ-



ମାନଙ୍କୁ ରାଜା ଡାକି ଏକ ସଭା କଲେ । ସମସ୍ତେ କହିଲେ, "ରାଜପୁତ୍ରଙ୍କ ଜାତକ ଅଦ୍ଭୁତ । କିନ୍ତୁ କୋଡ଼ିଏ ବର୍ଷ ବୟସରେ ଏକ ରିଷ୍ଟ ଅଛି । ତେବେ ସେସବୁ ଦୂର କରାଯାଇ ପାରେ ।"

ଏତେ ସବୁ ଆଲୋଚନା ମଧ୍ୟରେ ମିହିର ଚୁପ୍ ହୋଇ ବସିଥିଲେ । ରାଜା ଯେତେବେଳେ ତାଙ୍କର ମତ ଲୋଡ଼ିଲେ, ସେତେବେଳେ ଦୃଢ଼ ସ୍ୱରରେ ସେ କହିଲେ, "ମହାରାଜ, କୋଡ଼ିଏ ବର୍ଷ ପରେ ଯେଉଁ ପ୍ରଥମ ପୂର୍ଣ୍ଣିମା ପଡ଼ିବ, ସେଦିନ ସନ୍ଧ୍ୟା ସମୟରେ ଗୋଟିଏ ବାର୍‌ହାର ଆକ୍ରମଣରେ ରାଜକୁମାର ପ୍ରାଣତ୍ୟାଗ କରିବେ ।"

ରାଜକୁମାର କ୍ରମେ ବଡ଼ ହେଲେ । ଯେତେବେଳେ ସେ ଯୁବାବସ୍ଥା ପ୍ରାପ୍ତ କଲେ ସେତେବେଳେ ରାଜା ଜ୍ୟୋତିଷମାନଙ୍କ କଥା ମନରେ ସ୍ମରଣ କରି ବହୁତ ବ୍ୟାକୁଳ ହେଉଥା'ନ୍ତି ।

ରାଜାଙ୍କର ମିହିରଙ୍କ ଉପରେ ଅତୁଟ ବିଶ୍ୱାସ ଥିଲା । ସେ ଜାଣିଥିଲେ ଯେ ସୂର୍ଯ୍ୟ ବରଂ ପଶ୍ଚିମରେ ଉଦୟ ହୋଇ ପାରନ୍ତି କିନ୍ତୁ ମିହିରଙ୍କ କଥା କଦାପି ମିଥ୍ୟା ହେବ ନାହିଁ । ତେଣୁ ସେ ତାଙ୍କର ଦେହରକ୍ଷୀ ଓ ସୈନ୍ୟ-ସାମନ୍ତମାନେ ସର୍ବଦା ସାବଧାନ ଥା'ନ୍ତି । ରାଜକୁମାରଙ୍କୁ ସଦାବେଳେ ବିପଦରୁ ରକ୍ଷା କରିବାକୁ ଅନେକ ଲୋକ ଥା'ନ୍ତି ।

ପ୍ରାରବ୍ଧକୁ ବା କିଏ ଖଣ୍ଡନ କରିପାରିବ? ତଥାପି ରାଜା ରାଜକୁମାରଙ୍କୁ ଆସନ୍ନ ମୃତ୍ୟୁରୁ ରକ୍ଷା କରିବା ଲାଗି ରାଜଧାନୀରୁ କିଛି ଦୂରରେ ସାତମହଲାର ଏକ ପ୍ରାସାଦ ତିଆରି କରିଦେଲେ । ସେଠାରେ ରାଜକୁମାରଙ୍କୁ ରଖାଇଲେ ଓ ପ୍ରତ୍ୟେକ ମହଲାରେ ସଶସ୍ତ୍ର ପ୍ରହରୀ ସବୁ ଜଗି ରହିଲେ ।

ତା'ପରେ ରାଜକୁମାରଙ୍କ ମନ ଖୁସି ରଖିବା ପାଇଁ ସେଠାରେ ନାନା ପ୍ରକାର ଆନନ୍ଦ ଆସରର ବ୍ୟବସ୍ଥା କଲେ । କିନ୍ତୁ ସେଠାରୁ ବାହାରି ରାଜକୁମାର ଯେପରି ବଣ ଜଙ୍ଗଲ ଆଡ଼େ ଭୁଲରେ ମଧ୍ୟ ନ ଯା'ନ୍ତି ତାହାର ବ୍ୟବସ୍ଥା କଲେ ।

କ୍ରମେ ସମୟ ପାଖ ହୋଇ ଆସୁଥାଏ । ରାଜାଙ୍କ ମନରେ ଉତ୍କଣ୍ଠା ବଢ଼ି ବଢ଼ି ଚାଲିଥାଏ । ଅବଶ୍ୟ ସେ ଧୀରସ୍ଥିର ଭାବରେ ନିଜର କର୍ତ୍ତବ୍ୟ କରିଯାଉଥାନ୍ତି । ନିଜର ଅନ୍ତରର ଉତ୍କଣ୍ଠା ଭାବ ବାହାରକୁ ପ୍ରକାଶ କରୁ ନଥାନ୍ତି । ରାଜଧାନୀ ଭିତରକୁ କୌଣସି ବାର୍ତ୍ତା ପଶିବାର ଅବଶ୍ୟ ପ୍ରଶ୍ନ ନଥିଲା ।

ରାଜକୁମାରଙ୍କ ବିଂଶତିତମ ଜନ୍ମଦିନ ବହୁତ ଆଡ଼ମ୍ବରରେ ପାଳନ କରାଗଲା । ତା'ପରେ ସଙ୍କଟ ସମୟ ପାଇଁ ଆଉ ଦୁଇଦିନ ମାତ୍ର ବାକି ଅଛି । ରାଜା ସମସ୍ତ ପ୍ରହରୀଙ୍କୁ ଅଧିକ ସାବଧାନ ହେବା ପାଇଁ ନିର୍ଦ୍ଦେଶ ଦେଲେ । ପୂର୍ଣ୍ଣିମା ଦିନ ଆସିଲା । ସକାଳୁ ବେଦପାଠ ଇତ୍ୟାଦି ଚାଲିଥାଏ । କ୍ରମେ ଅର୍ଦ୍ଧେକ ଦିନ କଟିଗଲା ।

ଅନ୍ୟ ପଣ୍ଡିତମାନେ ଭାବିଲେ ଯେ ବୋଧହୁଏ ମିହିର ଭୁଲ୍ ଗଣନା କରିଛନ୍ତି । ଇତିମଧ୍ୟରେ ଅପରାହ୍ଣ ପ୍ରାୟ ଶେଷ ହୋଇ ସନ୍ଧ୍ୟା ହେବାକୁ ବସିଲା । ସମୟ ଅତିକ୍ରମ କରିଯାଇଛି ଭାବି ରାଜା ଖୁସି ହୋଇ ସଭାସଦ୍‌ବର୍ଗଙ୍କ ଧନ କୁମାରଙ୍କୁ ଦେଖିବାକୁ ଗଲେ । ଯାଉ ଯାଉ ସେବକମାନେ ଆସି ଖବର ଦେଲେ ଯେ କୁମାର ଭଲ ଅଛନ୍ତି । କେହି କିଛି ବୁଝି ପାରୁ ନାହାନ୍ତି, କେବଳ ମିହିରଙ୍କ ମୁଖକୁ ଚାହିଁ ରହିଛନ୍ତି । ମିହିର କିନ୍ତୁ ଭାବୁଥା'ନ୍ତି, ଏହା କିପରି ସମ୍ଭବ ଯେ ଜ୍ୟୋତିଷ ଗଣନାରେ ଏତେ ଭୁଲ୍ ହୋଇଯିବ ? ସମସ୍ତେ କୁମାରଙ୍କୁ ଦେଖିବା ପାଇଁ ବ୍ୟସ୍ତ ହୋଇ ଶୀଘ୍ର ଶୀଘ୍ର ଗଲେ । ସେବକମାନେ କହିଲେ ଯେ କୁମାର



ଚତୁର୍ଥ ମହଲରେ ଅଛନ୍ତି । ସମସ୍ତେ ଯଥାଶିଘ୍ର ଯାଇ ଚତୁର୍ଥ ମହଲରେ ପହଞ୍ଚିଲେ । କିନ୍ତୁ ସେଠାରେ ଥିବା ସେବକମାନେ କହିଲେ, "ଟିକିଏ ହାଓ୍ୱା ଖାଇବାକୁ କୁମାର ଉପର ମହଲକୁ ଯାଇଛନ୍ତି । ସମସ୍ତେ ଶେଷ ମହଲ ଉପରକୁ ଯିବାକୁ ଲାଗିଲେ । ସେତେବେଳକୁ ବିପଦ ସମୟ ବିତି ଯାଇଥିଲା । ତେଣୁ ସମସ୍ତେ ଭୟ, ଆଶା ଓ ଆଶଙ୍କା ମନରେ ନେଇ କୁମାରଙ୍କୁ ଦେଖିବାକୁ ଯାଉଥା'ନ୍ତି । ସମୟ ବିତି ଯାଇଥିବାରୁ ପ୍ରଶ୍ନ ଦୃଷ୍ଟିରେ ରାଜା ମିହିରଙ୍କୁ ଚାହିଁଲେ । ମିହିର କହିଲେ, "ମହାରାଜ, କିଛି ସମୟ ପୂର୍ବରୁ କୁମାର ଏ ଇହସଂସାର ଛାଡି ଯାଇଛନ୍ତି ।" ସମସ୍ତଙ୍କ ମନ ଓ ପ୍ରାଣ, ଆଶଙ୍କା ଓ ଭୟରେ ବ୍ୟସ୍ତ ବିବ୍ରତ ହୋଇ ଉଠିଲା । ଛାତ ଉପରକୁ ଯାଇ ଦେଖିଲେ କୁମାର ରକ୍ତବାନ୍ତି କରି ସେଠାରେ ମରି ପଡ଼ିଛନ୍ତି । ପତାକା ସ୍ତମ୍ଭରେ ଥିବା ତମ୍ବାର ଏକ ବିରାଟ ବରାହ ମୂର୍ତ୍ତି ତାଙ୍କ ଛାତ ଉପରେ ପଡ଼ିଯିବା ଫଳରେ ତାଙ୍କର ଏ ଦଶା ହୋଇଛି । ରାଜାଙ୍କ ସହିତ ପ୍ରଧାନମନ୍ତ୍ରୀ ଓ ଅନ୍ୟମାନେ ବିଳାପ କରିବାକୁ ଲାଗିଲେ ।

କିଛି ସମୟ ପରେ ରାଜା ଧୈର୍ଯ୍ୟ ଧରି ସମସ୍ତଙ୍କୁ ବୁଝାଇଲେ, "ଏହି ଭବନ ତିଆରି ସମୟରେ ଶିଳ୍ପୀ ଏକ ବରାହ ମୂର୍ତ୍ତି ପତାକା ସ୍ତମ୍ଭ ଉପରେ ରଖିଥିଲା । କୁମାର କୌତୁହଳ-ବଶତଃ ତାହାକୁ ଟାଣି ପକାଇଛନ୍ତି ଏବଂ ଏହା ବହୁତ ଓଜନ ହୋଇଥିବାରୁ ତାହାକୁ ସମ୍ଭାଳି ପାରି ନାହାନ୍ତି । ବରାହ ମୂର୍ତ୍ତି ଆମର କୁଳଦେବତା । ଆମ କୁଳଦେବତା ଆମ ପୁଅକୁ ନିଜ ଭିତରେ ଲୀନ କରାଇଦେଲେ । ଏଥିରେ ବା କାହାର ହାତ ଅଛି । ଯାହା ବିଧିନିର୍ଦ୍ଦିଷ୍ଟ ଥିଲା ତାହା ହେଲା ।"

ତା'ପରେ ମହାରାଜା ମିହିରଙ୍କର ବହୁତ ପ୍ରଶଂସା କଲେ । ସେହି ଦିନହିଁ ତାଙ୍କୁ ସେ 'ବରାହମିହିର' ପଦବୀ ଦେଲେ ।



## ରଙ୍ଗ ବଦଳୁଥିବା ମାଛ

'ଫ୍ଲାଟ୍ ଫିସ୍' ନାମକ ଏକଜାତୀୟ ମତ୍ସ୍ୟ ଅଛି, ବିପଦ ପଡ଼ିବା ମାତ୍ରେ ତା'ର ଚତୁର୍ପାଖରେ ଥିବା ପାଣିଗଛମାନଙ୍କ ସହିତ ଏକ ହେବା ପାଇଁ ରଙ୍ଗ ବଦଳାଇ ପାରେ । ତଦ୍ୱାରା ଶତ୍ରୁ ତାହାକୁ ସହଜରେ ଚିହ୍ନି ପାରେ ନାହିଁ ।

## ମାଟିରେ ନୀଡ଼ ତିଆରି କରୁଥିବା ପକ୍ଷୀ

ଦକ୍ଷିଣ ଆମେରିକା ଓ ମଧ୍ୟ ଆମେରିକାରେ "ଓଭେନ୍ ବାର୍ଡ" ନାମକ ଏକ ପ୍ରକାର ପକ୍ଷୀ ବାସ କରନ୍ତି । ସେମାନେ ନିଜର ନୀଡ଼ ମାଟିରେ ବନାଇ ପାରନ୍ତି । ମାଟି ଶୁଖିଗଲେ ନୀଡ଼ଟି ଖୁବ୍ ଟାଣ ହୋଇଯାଏ ଓ ନିରାପଦ ରହିଥାଏ ।

## ଗଛଚଢ଼ା ବେଙ୍ଗ

ସାରା ପୃଥିବୀରେ ପ୍ରାୟ ୫୦୦ ପ୍ରକାର ବେଙ୍ଗ ଗଛ ଚଢ଼ନ୍ତି । ସେମାନଙ୍କ ଆଙ୍ଗୁଳିଗୁଡ଼ିକ ଏତେ ଲମ୍ବ ଯେ ଗଛ, ଲତା, ପତ୍ର ସବୁ ଜାବୁଡ଼ି ଧରିବାରେ ତାହା ସାହାଯ୍ୟ କରେ ।

